# ମୁଖବନ୍ଧ

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମୁଖ୍ୟ ୨୪ ବେଶ ମଧ୍ୟରୁ ପ୍ରତିବର୍ଷ ୨୨ଟି ବେଶ ସଂପନ୍ନ ହେଲାବେଳେ ଅନ୍ୟ ଦୁଇଟି ବେଶ ବିରଳ ମୁହୂର୍ତ୍ତରେ ସମ୍ପନ୍ନ ହୋଇଥାଏ । ଏହି ଦୁଇଟି ବିରଳ ବେଶ ହେଲା ରଘୁନାଥ ବେଶ ଓ ନାଗାର୍ଜୁନ ବେଶ । ଅନେକ ବର୍ଷ ଧରି ରଘୁନାଥ ବେଶ ଆଉ ହୋଇନଥିଲା ବେଳେ ୧୯୯୪ ପରେ ଆଉ ନାଗାର୍ଜୁନ ବେଶ ଯୋଗ ପଡ଼ିନାହିଁ । ଏହିସବୁ ବେଶ ଭିତରୁ କେତେକ ବେଶରେ ମହାପ୍ରଭୁ ଜଗନ୍ନାଥଙ୍କ ପୋଷାକ କେବଳ ବଦଳୁଥିବା ବେଳେ ଆଉ କେତେକ କ୍ଷେତ୍ରରେ ତାଙ୍କର ଅବତାର ବଦଳିଯାଇଥାଏ । ଯଥା କେତେବେଳେ ସେ ବିଷ୍ଣୁ ତ ଆଉ କେତେବେଳେ ନୃସିଂହ ବେଶ ଧାରଣ କରିଥାଆନ୍ତି । ପୁଣି ମହାପ୍ରଭୁମାନଙ୍କ ସବୁଯାକ ବେଶରେ ଜଗନ୍ନାଥ ମୁଖ୍ୟ ଭୂମିକାରେ ରହୁଥିବାବେଳେ କେବଳ ପ୍ରଳମ୍ବାସୁର ବଧ ବେଶରେ ବଳଭଦ୍ର ମୁଖ୍ୟ ଭୂମିକା ଗ୍ରହଣ କରନ୍ତି । ଜଗନ୍ନାଥଙ୍କ ମୁଖ୍ୟ ୨୪ ବେଶ ଭିତରୁ କେତେକ ବେଶ ପୁଣି ବର୍ଷକରେ ଏକାଧିକବାର ସଂପନ୍ନ ହୋଇଥାଏ । ଯଥାଃ ସୁନାବେଶ ପ୍ରାୟ ପାଞ୍ଚ ଥର ଓ ଶ୍ରାଦ୍ଧବେଶ ତିନି ଥର ସଂପନ୍ନ ହୋଇଥାଏ । ସେହିପରି ଘୋଡ଼ଲାଗି ବେଶ ଓ ଜାମାଲାଗି ବେଶର ତାତ୍ପର୍ଯ୍ୟ ହେଲା, ଅଧିକ ଶୀତ ପଡ଼ିଥିବାବେଳେ ମହାପ୍ରଭୁ ଦେହମୁଣ୍ଡ ସଂପୂର୍ଣ୍ଣ ଘୋଡ଼େଇ ହେବା ପରି ବେଶ ପିନ୍ଧିଥାଆନ୍ତି ଓ ଶୀତ କମିଗଲେ ଜାମାଲାଗି ବେଶ ହୋଇଥାଆନ୍ତି । ମାର୍ଗଶୀର ଷଷ୍ଠୀଠାରୁ ଘୋଡ଼ଲାଗି ଆରମ୍ଭ ହୋଇ ମାଘ ବସନ୍ତ ପଞ୍ଚମୀ ଯାଏଁ ଏମିତି ୬୦ ଦିନ ପର୍ଯ୍ୟନ୍ତ ଚାଲୁ ରହେ । ବସନ୍ତ ଷଷ୍ଠୀଠାରୁ ଫଗୁ ଦଶମୀ ପର୍ଯ୍ୟନ୍ତ ୩୫ ଦିନ ଲାଗି ମହାପ୍ରଭୁ ଜାମାଲାଗି ବେଶରେ ଭୂଷିତ ହୁଅନ୍ତି । ଏହି ବେଶରେ ଦେବତାମାନେ ଜାମା ଓ ଫତେଇ ପିନ୍ଧନ୍ତି । ବାର ଅନୁଯାୟୀ ବସ୍ତ୍ରର ରଙ୍ଗ ସ୍ଥିର ହୋଇଥାଏ ।

## ମାସ ଅନୁସାରେ ବେଶ

| | | | |
|---|---|---|---|
| ବୈଶାଖ : | ଚନ୍ଦନ ବେଶ | କାର୍ତ୍ତିକ : | ହରିହର ବେଶ, ଲକ୍ଷ୍ମୀନାରାୟଣ ବେଶ, ତ୍ରିବିକ୍ରମ ବେଶ, ବାଙ୍କଚୂଡ଼ା ବେଶ, ଲକ୍ଷ୍ମୀ ନୃସିଂହ ବେଶ, ରାଜରାଜେଶ୍ୱର ବେଶ, ନାଗାର୍ଜୁନ ବେଶ |
| ଜ୍ୟେଷ୍ଠ : | ହାତୀବେଶ | ମାର୍ଗଶୀରଃ | ଶ୍ରାଦ୍ଧବେଶ, ଘୋଡ଼ଲାଗି ବେଶ |
| ଆଷାଢ଼ : | ନବଯୌବନ ବେଶ, ସୁନାବେଶ | ପୌଷ : | ସୁନାବେଶ, ପଦ୍ମବେଶ, ଗଜଉଦ୍ଧାରଣ ବେଶ |
| ଶ୍ରାବଣ : | ଚିତାଲାଗି ବେଶ | ଫାଲ୍‌ଗୁନଃ | ଚାଚେରୀ ବେଶ, ସୁନାବେଶ |
| ଭାଦ୍ରବ : | ବଣଭୋଜି ବେଶ, କାଳୀୟ ଦଳନ ବେଶ, ପ୍ରଳମ୍ବାସୁର ବଧ ବେଶ, ରାମବଳରାମ ବେଶ | ଚୈତ୍ର : | ରଘୁନାଥ ବେଶ |
| ଆଶ୍ୱିନ : | ସୁନାବେଶ, ରାଧାଦାମୋଦର ବେଶ (କାର୍ତ୍ତିକ ପର୍ଯ୍ୟନ୍ତ ଏହି ବେଶ ରହେ) | | |

ତେବେ ଏହି ପ୍ରମୁଖ ବେଶଗୁଡ଼ିକ ଭିନ୍ନ ଶ୍ରୀଜଗନ୍ନାଥଙ୍କ ଅନ୍ୟ କେତେକ ବେଶ ଯେମିତି ସନ୍ଧ୍ୟା ବେଶ, ସକାଳ ଧୂପବେଶ, ତଡ଼ପ ଉତ୍ତରୀ ବେଶ ଇତ୍ୟାଦି ସଂପର୍କରେ ଜାଣିବା ପାଇଁ ସୁଦ୍ଧା ବହୁ ଭକ୍ତ ଆଗ୍ରହୀ। ମନ୍ଦିର ମଧ୍ୟରେ ସଂପନ୍ନ ହେଉଥିବା ସେସବୁ ବେଶର ଚିତ୍ର ବିରଳ। ଏହି ବହିରେ ସନ୍ନିବେଶିତ ମୁଖ୍ୟ ଚବିଶ ବେଶର ଚିତ୍ର ଶ୍ରୀମନ୍ଦିର ଗବେଷକମାନଙ୍କ ସୌଜନ୍ୟରୁ ଆମେ ପାଇଥିବାବେଳେ ସନ୍ଧ୍ୟାବେଶ, ତଡ଼ପ ଉତ୍ତରୀ ବେଶ, ଟାହ୍ୟାଲାଗି ବେଶ, ସେନାପଟ୍ଟ ବେଶ, ମକର ଚୌରାଶି ବେଶ, ପୁଷ୍ୟାଭିଷେକ ଓ ଗିରିଗୋବର୍ଦ୍ଧନ ବେଶର ଫଟୋ ଚିତ୍ର କିଛିବର୍ଷ ତଳେ ଭୁବନେଶ୍ୱରରେ ଅନୁଷ୍ଠିତ ଶ୍ରୀଜଗନ୍ନାଥ ବେଶ ପ୍ରଦର୍ଶନୀ ସୂତ୍ରରୁ ପାଇଅଛୁ। ଶ୍ରୀଜଗନ୍ନାଥଙ୍କ ହରିହର ବେଶ ଓ ଜାମାଲାଗି ପରି କେତେକ ବେଶର ଚିତ୍ର ଆମେ ପାଇପାରିନାହୁଁ। ବେଶ ସଂପର୍କୀୟ ତଥ୍ୟ ପାଇଁ ଗବେଷକ ଡ. ଭାସ୍କର ମିଶ୍ର ଏବଂ ଡ. ରାମଚନ୍ଦ୍ର ମିଶ୍ରଙ୍କ ଲିଖିତ ବହି ଦୁଇଟି ସହ ସାହିତ୍ୟିକ ଶ୍ରୀ ପୀତବାସ ରାଉତରାୟଙ୍କ ସହାୟତା ନିଆଯାଇଅଛି ।

ଉଲ୍ଲେଖଯୋଗ୍ୟ ଯେ, ମହାପ୍ରଭୁଙ୍କ ବେଶଗୁଡ଼ିକ ସଂପର୍କରେ ସଂପୂର୍ଣ୍ଣ ତଥ୍ୟମୂଳକ ବିବରଣୀ ଦେବାଲାଗି 'ସମ୍ବାଦ' ଯଥାସମ୍ଭବ ଯତ୍ପରୋନାସ୍ତି ଉଦ୍ୟମ କରିଛି। ଏହା ସତ୍ତ୍ୱେ କେଉଁଠି ସାମାନ୍ୟ ତ୍ରୁଟିବିଚ୍ୟୁତି ରହିଥିଲେ ତାହା ଆମ ଦୃଷ୍ଟିକୁ ଆଣିବା ଲାଗି ଶ୍ରୀଜଗନ୍ନାଥଙ୍କ ପ୍ରେମୀ ଭକ୍ତ ଓ ଗବେଷକମାନଙ୍କୁ ଆମର ଅନୁରୋଧ ରହିଲା।

ରଥଯାତ୍ରା ୨୦୧୧

ସଂପାଦକ: ସମ୍ବାଦ





## ଜଗନ୍ନାଥ ଅଷ୍ଟକମ୍

କଦାଚିତ୍ କାଳିନ୍ଦୀତଟ ବିପିନ ସଂଗୀତ କରବୋ
ମୁଦାଭୀରୀ ନାରୀ ବଦନ କମଳ ସ୍ୱାଦ-ମଧୁପଃ
ରମାଶମ୍ଭୁ ବ୍ରହ୍ମା ସୁରପତି ଗଣେଷାର୍ଚ୍ଚିତ ପଦୋ
ଜଗନ୍ନାଥଃ ସ୍ୱାମୀ ନୟନ ପଥଗାମୀ ଭବତୁମେ।

# ସୂଚିପତ୍ର

# ଅବକାଶ ବେଶ

ସବୁଦିନ ସକାଳ ସମୟରେ ଶ୍ରୀଜୀଉମାନଙ୍କ ମଙ୍ଗଳ ଆଳତି ଓ ମଇଲମ ନୀତି ଶେଷ ହେବାପରେ ଅବକାଶ (ସ୍ନାନ) ନୀତି ହୋଇଥାଏ । ଶ୍ରୀମନ୍ଦିରର ସ୍ୱତ୍ୱଲିପି ଅନୁଯାୟୀ ଏହି ବେଶର ନିର୍ଦ୍ଧାରିତ ସମୟ ହେଉଛି ସକାଳ ୬ଟାରୁ ୬ଟା ୩୦ ମିନିଟ୍ । ସାଧାରଣତଃ ଠାକୁରମାନଙ୍କ ଦନ୍ତ ମାର୍ଜନ ଓ ସ୍ନାନ ବିଧିକୁ 'ଅବକାଶ' କୁହାଯାଏ ।

ପୂର୍ବ ରାତ୍ରର ବଡ଼ସିଂହାର ବେଶରେ ରତ୍ନ ସିଂହାସନସ୍ଥ ଦାରୁ ବିଗ୍ରହମାନଙ୍କ ପରିଧାନ କରିଥିବା ଗୀତ ଗୋବିନ୍ଦ ଖଣ୍ଡୁଆ ବସ୍ତ୍ର ଓ ପୁଷ୍ପ ଅଳଙ୍କାର ଇତ୍ୟାଦି ମଙ୍ଗଳ ଆଳତି ନୀତି ଶେଷ ହେବା ପରେ ମଇଲମ (ଓଲାଗି) ହୋଇଥାଏ । ପୁଷ୍ପାଳକ ସେବକ ଶ୍ରୀଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ତିନି ବିଗ୍ରହଙ୍କୁ ୩ ଗୋଟି ତଡ଼ପ ଓ ସୁଦର୍ଶନଙ୍କୁ ଏକ ଗୋଟି ତଡ଼ପ ବସ୍ତ୍ର ଏବଂ ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥଙ୍କୁ ଦୁଇଟି ଉତ୍ତରୀୟ ବସ୍ତ୍ର ଲାଗି କରାନ୍ତି । ଏହି ତଡ଼ପ ଓ ଉତ୍ତରୀୟ ସୂତା ବସ୍ତ୍ରଗୁଡ଼ିକ ପାରମ୍ପରିକ କୁଶଳୀ ବୁଣାକାରମାନଙ୍କ ଦ୍ୱାରା ଏକ ନିର୍ଦ୍ଦିଷ୍ଟ ମାପରେ ନିର୍ମିତ ହୋଇଥାଏ ।

ଜନଶ୍ରୁତି ଅନୁଯାୟୀ ଏହି ବେଶରେ ପ୍ରବର୍ତ୍ତକ ହେଉଛନ୍ତି ଆଚାର୍ଯ୍ୟ ଶଙ୍କର । ଖ୍ରୀଷ୍ଟୀୟ ନବମ ଶତକରେ ଯଯାତିଙ୍କ ରାଜତ୍ୱ ସମୟରେ ଏହି ବେଶର ପ୍ରଚଳନ ହୋଇଥିବାର ଅନୁମାନ କରାଯାଏ ।

ଅବକାଶ ବେଶ କାର୍ଯ୍ୟ ଶେଷ ହେବାପରେ ଠାକୁରମାନଙ୍କ ଦନ୍ତ ମାର୍ଜନ ଓ ସ୍ନାନ ନୀତି ହୋଇଥାଏ ।

ମୁଖପଖାଳ ସେବକଙ୍କ ଆବାହନ କ୍ରମେ ତିନିଜଣ ପୁଷ୍ପାଳକ ସେବକ ରତ୍ନ ସିଂହାସନ ତଳେ ପୂର୍ବରୁ ପ୍ରସ୍ତୁତ ଥିବା ସୁଗନ୍ଧି ଜଳକୁ ପଞ୍ଚୋପଚାରରେ ପୂଜା କରିଥାନ୍ତି । ସୂଚନାଯୋଗ୍ୟ ଯେ ମହାପ୍ରଭୁଙ୍କ ବାଡ଼ର ସ୍ନାନ ପୂଜା ଭିତରଚ୍ଛ ମହାପାତ୍ର କରିଥାନ୍ତି ଏବଂ ଅନ୍ୟ ଦୁଇଜଣ ପାଳିଆ ପୁଷ୍ପାଳକ ସେବକ ବଳଭଦ୍ର ଓ ସୁଭଦ୍ରାଙ୍କ ବାଡ଼ରେ ସ୍ନାନ ପୂଜା କରିଥାନ୍ତି । ଏହି ସମୟରେ ତିନିଗୋଟି ରୂପା ପିଙ୍ଗଣରେ ପ୍ରସ୍ତୁତ କର୍ପୂର ଓ ସୁବାସିତ ପୁଷ୍ପ ପଡ଼ିଥିବା ଜଳରେ ଠାକୁରମାନଙ୍କ ମୁଖ ମାର୍ଜନ, ଦନ୍ତ ମାର୍ଜନ ଓ ସ୍ୱର୍ଣ୍ଣ ଜିଭଛୋଲାରେ ଜିଭିକରଣ ଇତ୍ୟାଦି ନୀତି ସଂପାଦିତ ହୋଇଥାଏ । ସର୍ବଶେଷରେ ଅଷ୍ଟ ଧାତୁରେ ନିର୍ମିତ ଏକ ସ୍ୱତନ୍ତ୍ର ଶୈଳୀର ଦର୍ପଣକୁ ମାର୍ଜନ କରାଯାଇ ପରଖରେ ସ୍ଥାପନ ପୂର୍ବକ ସଂସ୍କାର ଓ ପଞ୍ଚାମୃତ ତଥା ସୁବାସିତ ଜଳରେ ସ୍ନାନ କରାଯାଇଥାଏ ।

ଅବକାଶ ନୀତି ପରେ ଶ୍ରୀବିଗ୍ରହମାନଙ୍କ ମଇଲମ ଓ ବେଶ ହୋଇଥାଏ । ଏହାପରେ ସର୍ବସାଧାରଣ ଭକ୍ତ ତଥା ଦର୍ଶନାର୍ଥୀମାନେ ରତ୍ନ ସିଂହାସନ ନିକଟକୁ ଯାଇ ଶ୍ରୀବିଗ୍ରହମାନଙ୍କୁ ଦର୍ଶନ କରିଥାନ୍ତି ।

# ବଡ଼ସିଂହାର ବେଶ

ଶ୍ରୀମନ୍ଦିର ସ୍ୱତ୍ୱଲିପି ମୁତାବକ ଶ୍ରୀବିଗ୍ରହମାନଙ୍କର ବଡ଼ସିଂହାର ବେଶ ହୋଇଥାଏ । ଶ୍ରୀଜଗନ୍ନାଥ ମନ୍ଦିରରେ ବହୁ ପ୍ରାଚୀନ କାଳରୁ ଠାକୁରମାନେ ଦୈନନ୍ଦିନ ପ୍ରଥମେ ବସ୍ତ୍ର ଶୃଙ୍ଗାର, ଦ୍ୱିତୀୟରେ ଭୂଷଣ ଶୃଙ୍ଗାର ଓ ଶୟନ କାଳରେ ପୁଷ୍ପ ଶୃଙ୍ଗାରରେ ଭୂଷିତ ହୋଇଥାନ୍ତି । ବଡ଼ସିଂହାର ବେଶ ହେଉଛି ପୁଷ୍ପ ବେଶ । ନାନାଦି ପୁଷ୍ପାଳଙ୍କାରରେ ବିମଣ୍ଡିତ ଶ୍ରୀଜୀଉମାନଙ୍କ ଏହି ଆକର୍ଷଣୀୟ ବେଶ ସମଗ୍ର ଭାରତରେ ବିରଳ ।

ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରୁ ଏହି ମନୋରମ ପୁଷ୍ପ ଶୃଙ୍ଗାର ବା ବେଶ ଶ୍ରୀମନ୍ଦିରରେ ଅନୁଷ୍ଠିତ ହୋଇ ଆସୁଥିବା ଜଣାଯାଏ । ଏହି ପବିତ୍ର ପୁଷ୍ପ ବେଶ ପ୍ରତ୍ୟହ ରାତ୍ରରେ ଶ୍ରୀଜୀଉମାନଙ୍କ ଚନ୍ଦନଲାଗି ନୀତି ପରେ ହୋଇଥାଏ । ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଉଲ୍ଲେଖ ହେଇଛି ଯେ- 'ରାତ୍ର ୧୦ଟା ୩୦ ମିନିଟ୍ ସମୟରେ ବଡ଼ସିଂହାର ବେଶ ହେବାର ନିୟମ । ଏହି ବେଶ ପାଇଁ ଶ୍ରୀରାମ ଦାସ ମଠ ପୁଷ୍ପରେ ନିର୍ମିତ କରପଲ୍ଲବ, କୁଣ୍ଡଳ ଓ ତଡ଼ଗି ଯୋଗାଏ । ଏମାର ମଠ ଫୁଲର ଚନ୍ଦ୍ରିକା ଯୋଗାଏ । ଏହି ପୁଷ୍ପ ଅଳଙ୍କାର ଯୋଗାଇବା ସକାଶେ ଉକ୍ତ ଦୁଇ ମଠ ଖଞ୍ଜା ଜମି ଭୋଗ କରନ୍ତି । ଚାଙ୍ଗଡ଼ା ଘରୁ ଚାଙ୍ଗଡ଼ା ମେକାପ ବାରଲାଗି ପାଟ ଯୋଗାଏ । ଏହି ପାଟରେ ଗୀତଗୋବିନ୍ଦ ଶ୍ଳୋକ ବୁଣାଯାଇଥାଏ ।

କବି ଜୟଦେବଙ୍କ ସମୟରେ ଗୀତଗୋବିନ୍ଦର ପ୍ରଚଳନ ହୋଇ ପରବର୍ତ୍ତୀ ସମୟରେ ଗୀତଗୋବିନ୍ଦ ଖଣ୍ଡୁଆ ବଡ଼ସିଂହାର (ଶୃଙ୍ଗାର) ବେଶରେ ଠାକୁରମାନଙ୍କୁ ଲାଗି ହେଲା । ଏହି ବେଶରେ ଠାକୁରମାନେ ଖଣ୍ଡୁଆ, ପହରଣ, ଫୁଟା, ଶିରକପଡ଼ା (ଶ୍ରୀକାପଡ଼ା) ସୂତାଲୁଗା ଇତ୍ୟାଦି ପାରମ୍ପରିକ ବସ୍ତ୍ରମାନ ପରିଧାନ କରିଥାନ୍ତି । ସୂଚନାଯୋଗ୍ୟ ଯେ, ନୀଳଧଡ଼ିଯୁକ୍ତ ଧଳା ଶିରକପଡ଼ା ବଳଭଦ୍ରଙ୍କୁ, ହଳଦିଆ ରଙ୍ଗ ଧଡ଼ିର ଶିରକପଡ଼ା ପ୍ରଭୁ ଜଗନ୍ନାଥଙ୍କୁ ଓ ନାଲିଧଡ଼ିଆ ଧଳା ଶିରକପଡ଼ା ମା' ସୁଭଦ୍ରାଙ୍କୁ ଲାଗି ହୋଇଥାଏ । ଉକ୍ତ ବେଶରେ ଠାକୁରମାନେ ଲାଗି ହେଉଥିବା ବିଭିନ୍ନ ପୁଷ୍ପ ଅଳଙ୍କାର ମଧ୍ୟରେ ମୁଖ୍ୟତଃ ଗଭା, ଚନ୍ଦ୍ରିକା, ଅଳକା, ତିଳକ, ଝୁମ୍ପା, ନାକୁଆସି, ଦୟଣା, ଅଧରମାଳ, ମକର କୁଣ୍ଡଳ, ଶ୍ରୀପୟର ମାଳା, ହୃଦୟପଦକ, କୌସ୍ତୁଭ ପଦକ, କରପଲ୍ଲବ ଆଦି ପ୍ରଧାନ ।

ବଡ଼ସିଂହାର ବେଶ ହେଉଛି ବିଶେଷ ମାନସିକତା, ଭାବାବସ୍ଥା ତଥା ପ୍ରକୃତିର ପ୍ରତିଫଳନ । ଜନଶ୍ରୁତି ଅନୁଯାୟୀ ଅତିବଡ଼ୀ ଜଗନ୍ନାଥ ଦାସ ଗୋସ୍ୱାମୀ ପ୍ରତିଦିନ ମହାପ୍ରଭୁଙ୍କ ବଡ଼ସିଂହାର ବେଶ ଦର୍ଶନ କରିବା ପରେ ଶୟନ କରୁଥିଲେ ।

ବଡ଼ସିଂହାର ବେଶ ପରେ ପରେ ଠାକୁରମାନଙ୍କ ବଡ଼ସିଂହାର ଭୋଗ ହୁଏ । ଏହି ବେଶରେ ଠାକୁରମାନଙ୍କ ପହୁଡ଼ ବା ଶୟନ ନୀତି ସଂପାଦିତ ହୋଇଥାଏ ।ଲବ

# ସୁନାବେଶ

ବର୍ଷକ ମଧ୍ୟରେ ଅନୁଷ୍ଠିତ ଅନେକ ବେଶ ମଧ୍ୟରୁ ଶ୍ରୀଜୀଉମାନଙ୍କର ସୁନାବେଶ ବା ରାଜ ବେଶ ଅତ୍ୟନ୍ତ ମନୋମୁଗ୍ଧକର। ଏହି ବେଶରେ ଠାକୁରମାନେ ବହୁ ପ୍ରକାର ସ୍ୱର୍ଣ ଅଳଙ୍କାରରେ ସଜ୍ଜିତ ହୋଇଥାନ୍ତି। ପ୍ରତିବର୍ଷ ମହାପ୍ରଭୁଙ୍କର ଏହି ରାଜବେଶ ବା ସୁନାବେଶ ପ୍ରାୟ ପାଞ୍ଚ ଥର ଅନୁଷ୍ଠିତ ହୋଇଥାଏ। ଏହା ସାଧାରଣତଃ ବିଜୟାଦଶମୀ (ଦଶହରା), ପୌଷ ପୂର୍ଣିମା (ପୁଷ୍ୟାଭିଷେକ), ଦୋଳ ପୂର୍ଣିମା, କାର୍ତ୍ତିକ ପୂର୍ଣିମା ଓ ଆଷାଢ଼ ଶୁକ୍ଳ ଏକାଦଶୀ (ରଥ ଉପରେ) ଦିନ ଅନୁଷ୍ଠିତ ହୋଇଥାଏ। ତ୍ରୟୋଦଶ ଶତାବ୍ଦୀରେ ଗଙ୍ଗ ବଂଶର ରାଜା ତୃତୀୟ ଅନଙ୍ଗଭୀମ ଦେବ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ଉତ୍କଳର ସମ୍ରାଟ ତଥା ରାଷ୍ଟ୍ର ଦେବତା ବୋଲି ଘୋଷଣା କରିଥିଲେ। ଏପରିକି ରାଜା କପିଳେନ୍ଦ୍ରଦେବ ନିଜକୁ ଜଗନ୍ନାଥଙ୍କ ରାଉତ ଓ ପୁତ୍ର ବୋଲି ଏକ ଶିଳାଲିପିରେ ଉଲ୍ଲେଖ କରିବା ସହିତ ପ୍ରଚୁର ପରିମାଣରେ ସ୍ୱର୍ଣ, ରୌପ୍ୟ, ମଣି, ମୁକ୍ତା, ହୀରା, ନୀଳା ଇତ୍ୟାଦି ମୂଲ୍ୟବାନ ରତ୍ନ, ଅଳଙ୍କାର ଶ୍ରୀଜୀଉମାନଙ୍କୁ ଅର୍ପଣ କରିଥିବାରୁ ସେ ସମୟରେ ରୀତି, ନୀତି ଓ ପରମ୍ପରାକୁ ନେଇ ସୁନା ବେଶର ସୃଷ୍ଟି ହୋଇଥିବା ଅନୁମାନ କରାଯାଏ। ସୁନାବେଶରେ ଐଶ୍ୱର୍ଯ୍ୟ ଭାବ ପ୍ରକାଶିତ ହୋଇଥାଏ। ଗବେଷକମାନେ ସୁନାବେଶର ଉତ୍ପତ୍ତି ୧୨୩୨ ଖ୍ରୀଷ୍ଟାବ୍ଦ ବୋଲି ନିରୂପଣ କରିଛନ୍ତି। ବର୍ଷ ମଧ୍ୟରେ ମୋଟ ପାଞ୍ଚଥର ସୁନାବେଶ ମଧ୍ୟରୁ ଚାରିଟି ସୁନାବେଶ ବା ରାଜବେଶ ଶ୍ରୀମନ୍ଦିର ରତ୍ନ ସିଂହାସନରେ ଅନୁଷ୍ଠିତ ହେଉଥିବାବେଳେ ଆଷାଢ଼ ମାସ ଶୁକ୍ଳ ଏକାଦଶୀ ଦିନ ସିଂହଦ୍ୱାର ସମ୍ମୁଖସ୍ଥ ରଥ ଉପରେ ଶ୍ରୀ ବିଗ୍ରହମାନଙ୍କ ସୁନା ବେଶକୁ ସର୍ବଧର୍ମ, ସର୍ବମତବାଦର ଜନସାଧାରଣ ତଥା ଭକ୍ତଗଣ ଦର୍ଶନ କରିଥାନ୍ତି। ସୁନାବେଶର ଅନ୍ୟ ନାମ ହେଉଛି ରାଜବେଶ ଓ ରାଜରାଜେଶ୍ୱର ବେଶ। ଅପର ପକ୍ଷରେ ଆଷାଢ଼ ଶୁକ୍ଳ ଏକାଦଶୀ ତିଥିରେ ରଥ ଉପରେ ହେଉଥିବା ବେଶର ନାମ ହେଉଛି ବଡ଼ତଡ଼ାଉ ବେଶ। ବଡ଼ତଡ଼ାଉ ବେଶ ସମ୍ପର୍କରେ ଜଣାଯାଏ ଯେ, ୧୪୬୦ ଖ୍ରୀ.ଅ.ରେ ରାଜା କପିଳେନ୍ଦ୍ର ଦେବ ଦେବୀ ମା' ଜୟଦୁର୍ଗାଙ୍କ କୃପାରୁ ସମଗ୍ର ଦକ୍ଷିଣ ବିଜୟ କରି ୧୬ ଗୋଟି ହସ୍ତୀ ପୃଷ୍ଠରେ ବିପୁଳ ଧନରତ୍ନ ଲଦି ନିଜ ରାଜ୍ୟକୁ ଆଣି ଶ୍ରୀମନ୍ଦିରରେ ମହାପ୍ରଭୁମାନଙ୍କୁ ଉତ୍ସର୍ଗ କରିଥିଲେ। ଗଜପତି ମହାରାଜାଙ୍କର ଅନୁରୂପ ଆଗ୍ରହ ଦେଖି ବଡ଼ତଡ଼ଉ ସେବକ ଶ୍ରୀ ଛାମୁରେ ଜଣାଇଥିଲେ ଯେ ରତ୍ନ ସିଂହାସନ ଉପରେ ଅନୁଷ୍ଠିତ ବେଶଗୁଡ଼ିକ ସବୁ ଶ୍ରେଣୀର ଜନତା ଦେଖିବାର ସୁଯୋଗ ପାଉନାହାନ୍ତି। ତେଣୁ ରଥଯାତ୍ରାର ଅନ୍ତିମ ପର୍ଯ୍ୟାୟରେ ରଥଗୁଡ଼ିକ ସିଂହଦ୍ୱାରଠାରେ ପହଞ୍ଚିବା ପରେ ଶୁକ୍ଳ ଏକାଦଶୀ ଦିନ ରଥ ଉପରେ ମହାପ୍ରଭୁମାନଙ୍କୁ ସର୍ବସମକ୍ଷରେ ସୁନାବେଶରେ ସୁସଜ୍ଜିତ କରିବା ପାଇଁ ସେ ଅନୁରୋଧ କରିଥିଲେ। ବଡ଼ତଡ଼ଉ ସେବକଙ୍କ ଅନୁରୋଧକ୍ରମେ ସେହିଦିନ ଠାରୁ ରାଜା କପିଳେନ୍ଦ୍ର ଦେବ ୧୩୮ ପ୍ରକାର ରତ୍ନଖଚିତ ସ୍ୱର୍ଣ ଅଳଙ୍କାର ନିର୍ମାଣ କରି ଶ୍ରୀବିଗ୍ରହମାନଙ୍କୁ ରଥ ଉପରେ ଏହି ମନୋମୁଗ୍ଧକର ବେଶ କରାଇଥିଲେ। ସାଧାରଣତଃ ଶ୍ରୀଜୀଉଙ୍କ ସକାଳଧୂପ, ମଧ୍ୟାହ୍ନ ଧୂପ ଇତ୍ୟାଦି ନୀତି ସରିବା ପରେ ସୁନାବେଶ ଆରମ୍ଭ ହୋଇଥାଏ। ବିଜୟାଦଶମୀ ବା ଦଶହରା ଦିନ ରତ୍ନ ସିଂହାସନରେ ବିରାଜିତ ମୁଖ୍ୟ ତିନିଠାକୁରଙ୍କୁ 'ରାଜବେଶ'ରେ ସଜ୍ଜିତ କରାଯାଏ। ଉକ୍ତ ଦିନ ଠାକୁରମାନଙ୍କ ଅବକାଶ ନୀତି ଶେଷ ହେବାପରେ ଭଣ୍ଡାର ଦ୍ୱାରଠାରୁ ଭଣ୍ଡାର ମେକାପ ତିନିଟି ରୂପାବଟାରେ ଚନ୍ଦନ ଅଣାଯାଏ। ଏହାପରେ ତିନି ବାଡ଼ରେ (ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା) ଚନ୍ଦନ ଲାଗି ହୋଇଥାଆନ୍ତି। ଏହି ନୀତି ସଂପାଦନ ପରେ ଠାକୁରମାନଙ୍କୁ ୩୨ ମୂର୍ତ୍ତି ଅଳଙ୍କାର ଲାଗି କରାଯାଇ ରାଜବେଶ କରାଯାଏ। ଏହା ସାଙ୍ଗକୁ ବେଶ ସମୟରେ ଠାକୁରମାନଙ୍କୁ ପାଞ୍ଚ ଖଣ୍ଡ ପୁଷ୍ପ ମାଳ ଲାଗି କରାଯାଏ। ପୂର୍ବରୁ ଅର୍ଥାତ୍ ସପ୍ତମୀ ଦିନଠାରୁ ଭଣ୍ଡାର ଘର ଠାରେ ଶ୍ରୀବଳଭଦ୍ର ଦେବଙ୍କର ହଳ ଓ ମୂଷଳ, ସୁଭଦ୍ରା ଦେବୀଙ୍କର ଦୁଇଗୋଟି ତଡ଼ଗୀ (ସ୍ୱର୍ଣ ଅଳଙ୍କାର) ଶ୍ରୀଜଗନ୍ନାଥଙ୍କର ଶଙ୍ଖ, ଚକ୍ର ଆୟୁଧ ରୂପେ ପୂଜାରେ ବସିଥାଏ। ଦଶହରା ଦିନ ସକାଳଧୂପ ସରିବା ପରେ ପୂଜାରେ ବସିଥିବା ଆୟୁଧମାନଙ୍କୁ ପୂଜାପଣ୍ଡା ମହାସ୍ନାନ କରାଇ ବରୁଣ ପୂଜା ସାରନ୍ତି। ଏହି ଆୟୁଧ ଘଣ୍ଟ, ଛତି, କାହାଳୀ ସହ ବଡ଼ ଦେଉଳକୁ ତିନିଥର ବେଢ଼ା ପ୍ରଦକ୍ଷିଣ କରି ଭିତର ସିଂହାସନ ଉପରକୁ ବିଜେ ହୋଇବା ପରେ ୩ ଜଣ ପାଳିଆ ପୁଷ୍ପାଳକ ତିନି ବାଡ଼ରେ ଆୟୁଧ ଲାଗି କରାଇଥାନ୍ତି। ଶ୍ରୀବିଗ୍ରହମାନଙ୍କ ଏହି ରାଜବେଶରେ ତିନି ଠାକୁରଙ୍କୁ ନୂତନ ପାଟବସ୍ତ୍ରରେ ସଜ୍ଜିତ କରାଯିବା ସଂଗେ ସଂଗେ ବିଭିନ୍ନ ପ୍ରକାର ସ୍ୱର୍ଣ ଅଳଙ୍କାର ଲାଗି କରାଯାଇଥାଏ।

# ପଦ୍ମବେଶ

ପଦ୍ମ ବେଶ ଏକ ଭାବମୂଳକ ବେଶ ଅଟେ । କେତେକ ଗବେଷକଙ୍କ ମତାନୁଯାୟୀ ଏହି ବେଶର ପ୍ରବର୍ତ୍ତକ ହେଉଛନ୍ତି ବଡ଼ଛତା ମଠାର ସନ୍ଥ ରଘୁବର ଦାସ (ସପ୍ତଦଶ ଶତାବ୍ଦୀ) । ପଦ୍ମବେଶ ସଂପର୍କରେ ଥିବା କିମ୍ବଦନ୍ତୀ ଅନୁଯାୟୀ - ଓଡ଼ିଶାଠାରୁ ଶହ ଶହ ମାଇଲ୍ ଦୂରରେ ଥିଲେ ଜଣେ ହିନ୍ଦୀଭାଷୀ ସାଧୁ । ତାଙ୍କର ନାମ ଥିଲା ମନୋହର ଦାସ । ଏକଦା ମହାତ୍ମା ମନୋହର ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଉଦ୍ଦେଶ୍ୟରେ ଶ୍ରୀକ୍ଷେତ୍ରକୁ ଆଗମନ କରିଥିଲେ । ତାଙ୍କର ପ୍ରବଳ ଆକାଂକ୍ଷା ଥିଲା ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ଦର୍ଶନ । ଦୀର୍ଘ ଦିନ ପାଦରେ ଚାଲି ଚାଲି ଅନେକ ଜଙ୍ଗଲ, ପାହାଡ଼, ନଈ, ରାସ୍ତା ଅତିକ୍ରମ କରି ଶାରୀରିକ ପୀଡ଼ା ସତ୍ତ୍ୱେ ସେ ଅବିଚଳିତ ଭାବେ ଆଗେଇ ଚାଲିଥାନ୍ତି । ପଥ ମଧ୍ୟରେ ରାତ୍ରି ହୋଇଗଲେ କୌଣସି ମନ୍ଦିର, ମଠ, ଆଶ୍ରମ କିମ୍ବା ବୃକ୍ଷ ତଳେ ବିଶ୍ରାମ ନିଅନ୍ତି । ପଦବ୍ରଜରେ ଯାଉଥିବାବେଳେ ସାଧୁଙ୍କୁ ଥରେ ଭୀଷଣ ଶୋଷ ହେଲା । ପାଖରେ କୌଣସି ଗ୍ରାମ କିମ୍ବା ଜଳାଶୟ ନଥିଲା । କ'ଣ କରିବେ ଏମିତି ଚିନ୍ତା କରି ମନୋହରଜୀ ଆଗକୁ ଚାଲୁଥାନ୍ତି । କିଛି ବାଟ ଅତିକ୍ରମ କରିବା ପରେ ହଠାତ୍ ତାଙ୍କର ଦୃଷ୍ଟିଗୋଚର ହେଲା ଆଗରେ ଗୋଟିଏ ଗ୍ରାମ ଓ ପାଖରେ ଜଳାଶ୍ରୟଟିଏ । ମନ ଭରି ଜଳାଶ୍ରୟରୁ ଆଞ୍ଜୁଳା ଆଞ୍ଜୁଳା କରି ପାଣି ପିଇ ସନ୍ତୁଷ୍ଟ ହୋଇ ଉପରକୁ ମୁହଁ ଉଠାଇଲାବେଳକୁ ଦେଖିବାକୁ ପାଇଲେ ପୁଷ୍କରିଣୀରେ ଅନେକ ପଦ୍ମଫୁଲ ଫୁଟିଛି । ମନୋହର ଦାସ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲେ, କାରଣ ଶୀତଦିନରେ ପଦ୍ମ ପୁଷ୍ପ ଫୁଟିବା ସମ୍ଭବ ନୁହେଁ । ସେ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ମନେ ମନେ ସ୍ମରଣ କରି ପ୍ରଭୁଙ୍କ ନିମିତ୍ତ ବହୁ କଷ୍ଟରେ ପୁଷ୍କରିଣୀରେ ଫୁଟିଥିବା ପଦ୍ମ ପୁଷ୍ପଗୁଡ଼ିକ ତୋଳି ଏକ ଭାରରେ ରଖିଲେ ଓ ତତ୍ପରେ ତାଙ୍କ ନିକଟରେ ଥିବା ଗୋଟିଏ ମଇଳା ଗାମୁଛାରେ ସେହି ଭାରକୁ ଘୋଡ଼ାଇ ଦେଲେ । ମାଘ ମାସ ଅମାବାସ୍ୟା ଦିନ ସେ ଶ୍ରୀକ୍ଷେତ୍ରରେ ପହଞ୍ଚି ସିଧାସଳଖ ଶ୍ରୀମନ୍ଦିରରେ ପ୍ରବେଶ କଲେ । ଗରୁଡ଼ ସ୍ତମ୍ଭ ନିକଟରେ ଦଣ୍ଡାୟମାନ ହୋଇ ରତ୍ନ ସିଂହାସନସ୍ଥ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଦର୍ଶନ କରି ମନୋହର ଅତ୍ୟନ୍ତ ଭାବ ବିହ୍ୱଳିତ ହୋଇଯାଇଥିଲେ । ଜଗମୋହନରେ ଉପସ୍ଥିତ ଥିବା ଜନୈକ ପଣ୍ଡାଙ୍କୁ ଗାମୁଛାରେ ଯତ୍ନରେ ବନ୍ଧା ହୋଇଥିବା ପଦ୍ମ ପୁଷ୍ପଗୁଡ଼ିକୁ ବଢ଼ାଇବାର ଉଦ୍ୟମ କରି ଅତି କାକୁତି ମିନତି ହୋଇ କହିଥିଲେ ଯେ, ଉକ୍ତ ପୁଷ୍ପ ଗୁଡ଼ିକ ଶ୍ରୀଜୀଉମାନଙ୍କ ଚରଣାରବିନ୍ଦରେ ଲାଗି କରିବା ପାଇଁ । ମଇଳା ଗାମୁଛାରେ ବନ୍ଧା ପଦ୍ମ ପୁଷ୍ପ ଦେଖି ଜନୈକ ପଣ୍ଡା କ୍ରୋଧାନ୍ୱିତ ହୋଇ ତାହାକୁ ତଳେ କଚାଡ଼ି ଦେଲେ । ଏ ଘଟନାରେ ଭକ୍ତ ମନୋହର ଦୁଃଖ ଓ ଅପମାନରେ ମ୍ରିୟମାଣ ହୋଇ ଗାମୁଛା ସହ ପୁଷ୍ପଗୁଡ଼ିକ ତଳୁ ଗୋଟାଇ ଶ୍ରୀମନ୍ଦିରରୁ ପଳାଇ ଆସି ସିଂହଦ୍ୱାରସ୍ଥ ବଡ଼ଛତା ମଠ ନିକଟରେ ଜଗନ୍ନାଥଙ୍କୁ ସ୍ମରଣ କରି ମୂର୍ଚ୍ଛିତ ହୋଇପଡ଼ିଲେ । ସେହିଦିନ ରାତ୍ରରେ ଜଗନ୍ନାଥ ମହାପ୍ରଭୁ ସ୍ୱପ୍ନାଦେଶରେ ଗଜପତି ମହାରାଜାଙ୍କୁ କହିଲେ, 'ମନୋହରଜୀ ଆଣିଥିବା ପଦ୍ମ ପୁଷ୍ପରେ ହିଁ ଆଜି ରାତ୍ରରେ ମୋର ବଡ଼ସିଂହାର ବେଶ ହେବ । ପଦ୍ମ ଚାଉଳରେ ଖିରି ଭୋଗ କରି ସେହି ସାଧୁଙ୍କୁ ସେବନ କରାଇ ତାଙ୍କର ଜୀବନ ରକ୍ଷା କର ।'

ଭକ୍ତ ପ୍ରବର ସାଧୁ ମନୋହର ଦାସଙ୍କ ଶ୍ରୀଜଗନ୍ନାଥଙ୍କୁ ପଦ୍ମ ପୁଷ୍ପ ପ୍ରଦାନର କିମ୍ବଦନ୍ତୀମୂଳକ ଆଖ୍ୟାନ ଅନୁକ୍ରମରେ ପୌଷ ମାସରେ ଏହି ବେଶରେ ଜଗନ୍ନାଥ ମହାପ୍ରଭୁ ସୋଲରେ ନିର୍ମିତ ପଦ୍ମ ପୁଷ୍ପ ପରିହିତ ହୋଇଥାଆନ୍ତି ।

# ଗଜ ଉଦ୍ଧାରଣ ବେଶ

ପ୍ରତିବର୍ଷ ମାଘ ପୂର୍ଣ୍ଣିମା ଦିନ ଶ୍ରୀମନ୍ଦିର ରତ୍ନ ସିଂହାସନସ୍ଥ ଶ୍ରୀବିଗ୍ରହମାନଙ୍କର ଗଜ ଉଦ୍ଧାରଣ ବେଶ ଅନୁଷ୍ଠିତ ହୋଇଥାଏ । ପୌରାଣିକ ତଥ୍ୟ ଅନୁଯାୟୀ ଏକଦା ବରୁଣ ହ୍ରଦରେ ଗଜରାଜ ସ୍ନାନ କରୁଥିବା ସମୟରେ ସେହି ହ୍ରଦରେ ଥିବା ଗୋଟିଏ ଭୀଷଣକାୟ କୁମ୍ଭୀର ଆକ୍ରମଣ କଲା । କୁମ୍ଭୀର ଆକ୍ରମଣରୁ ଉଦ୍ଧାର ପାଇବାର କୌଣସି ଉପାୟ ନଦେଖି ବିକଳରେ ପୁରୁଷୋତ୍ତମ ଭଗବାନଙ୍କୁ ସେ ପ୍ରାର୍ଥନା କରିଥିଲା ।

ଗଜରାଜର ପ୍ରାର୍ଥନାରେ ସ୍ୱୟଂ ପୁରୁଷୋତ୍ତମ ତତ୍‌କ୍ଷଣାତ୍ ଭକ୍ତ ଗଜଙ୍କୁ ଆକ୍ରମଣରୁ ରକ୍ଷା କରିବା ପାଇଁ ଚକ୍ରପେଷି କୁମ୍ଭୀରକୁ ମାରି ଉଦ୍ଧାର କରିଥିଲେ । ସେହି ପୌରାଣିକ ଆଖ୍ୟାୟିକାର ସ୍ମୃତିରେ ଶ୍ରୀମନ୍ଦିରରେ ଅତ୍ୟନ୍ତ ପୁରାତନ ସମୟରୁ ଶ୍ରୀବିଗ୍ରହମାନଙ୍କ ଗଜ ଉଦ୍ଧାରଣ ବେଶ ଅନୁଷ୍ଠିତ ହୋଇ ଆସୁଅଛି । ଭୌମ ବଂଶର ରାଣୀ ବକୁଳ ମହାଦେବୀ ଏହି ବେଶ ପ୍ରଥମେ ପ୍ରଚଳନ କରାଇଥିଲେ । ତତ୍ପରେ କିଛି ବର୍ଷ ପାଇଁ ଏହା ବନ୍ଦ ହୋଇଯାଇଥିଲା । ଖ୍ରୀ.ଅ. ୧୫୭୫ରେ ରାମଚନ୍ଦ୍ର ଦେବ ଠାକୁରମାନଙ୍କ ଗଜ ଉଦ୍ଧାରଣ ବେଶର ପୁନଃପ୍ରଚଳନ କରିଥିଲେ ।

ମାଘ ପୂର୍ଣ୍ଣିମା ଦିନ ଶ୍ରୀଜୀଉମାନଙ୍କର ମଇଲମ ଗଜ ଉଦ୍ଧାରଣ ବେଶ ହୋଇଥାଏ । ଭିତରଛ, ତଳିଛ, ପୁଷ୍ପାଳକ ନିଯୋଗ, ଖୁଣ୍ଟିଆ ଓ ମେକାପ ସେବକମାନଙ୍କ ସାହାଯ୍ୟ ସହଯୋଗରେ ଏହି ବେଶ କାର୍ଯ୍ୟ ସଂପାଦନ କରାଯାଇଥାଏ । ଠାକୁରମାନେ ଏହି ବେଶରେ ଚୂଳ, କିରୀଟ, କର୍ଣ୍ଣ କୁଣ୍ଡଳ, ସୂର୍ଯ୍ୟ ଚନ୍ଦ୍ର, ଅଷ୍ଟା ପଟି, ହାତ, ବାଜୁବନ୍ଧ, ହାତ ଫେଣ, ଆୟୁଧ - ଶଙ୍ଖ, ଚକ୍ର, ଗଦା, ପଦ୍ମ, ହଳ, ମୁଷଳ, ବାଙ୍କି, ପାହୁଡ଼, ଗୋଡ଼ ଖଡୁ, ହାତାମାଳ, ନାକଚଣା, ପଦ୍ମ କଢ଼ି ପ୍ରଭୃତି ଅଳଙ୍କାର ଯାହାକି ସୋଲ, ଜରି ଜମ୍ବୁରା, କନା, କଇଥ ଅଠା ଦ୍ୱାରା ନିର୍ମିତ ହୋଇଥାଏ, ତାହା ପରିଧାନ କରନ୍ତି ।

ଶ୍ରୀମନ୍ଦିର ପ୍ରଶାସନର ତତ୍ତ୍ୱାବଧାନରେ ଏହି ବେଶ କାର୍ଯ୍ୟ ୧୯୭୯ ମସିହାଠାରୁ ନିୟମିତ ଭାବେ ହୋଇଆସୁଅଛି । ଏ ବେଶରେ ବଳଭଦ୍ର ଓ ଜଗନ୍ନାଥ ପ୍ରତ୍ୟେକ ଚାରିଭୁଜ ହୋଇଥାନ୍ତି । ଶ୍ରୀଜଗନ୍ନାଥ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରି ଗରୁଡ଼ ଉପରେ ବସିବା ଭଙ୍ଗୀରେ ରହନ୍ତି ଏବଂ ତାଙ୍କ କୋଳରେ ଲକ୍ଷ୍ମୀ ପ୍ରତିମା ବିରାଜମାନ କରିଥାନ୍ତି । **ସୂଚନାଯୋଗ୍ୟ ଯେ, ଏହି ବେଶରେ କେବଳ ଲକ୍ଷ୍ମୀ (ଶ୍ରୀଦେବୀ) ଶ୍ରୀଜୀଉଙ୍କ କୋଳରେ ଉପବେଶନ କରିଥାନ୍ତି** । ବଳଭଦ୍ର ଶଙ୍ଖ, ଚକ୍ର, ହଳ, ମୁଷଳ ଧରି ବାସୁଦେବ ରୂପରେ ବିରାଜମାନ କରିଥାନ୍ତି ଓ ସୁଭଦ୍ରା କୃଷ୍ଣଙ୍କ ପରି ପାଦକୁ ଛନ୍ଦି ଏକ ପଦ୍ମ କଢ଼ି ଧରି ବିରାଜିତ ହୋଇଥାନ୍ତି । ଦୁଇଟି ହସ୍ତୀ (ଗଜ) ଶୁଣ୍ଢରେ ପଦ୍ମ କଳିକା ଧରି ଦଣ୍ଡାୟମାନ ଅବସ୍ଥାରେ ରହିଥାନ୍ତି । ହସ୍ତୀ ଦୁଇଟି ଶ୍ରୀଜୀଉଙ୍କ ସମୀପରେ ରହେ । ତା'ର ଶରୀରକୁ ଆକ୍ରମଣ ଭଙ୍ଗୀରେ ଏକ କୁମ୍ଭୀର ମୂର୍ତ୍ତି ରହିଥାଏ । ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପ ପରେ ଠାକୁରମାନଙ୍କ ଗଜ ଉଦ୍ଧାରଣ ବେଶ ସଂପନ୍ନ ହୋଇଥାଏ ।

# ରଘୁନାଥ ବେଶ

ରଘୁନାଥ ବେଶ ଏକ ରାଜକୀୟ ବେଶ ହୋଇଥିବାରୁ ଏବଂ ଏହି ବେଶରେ ଅନେକ ସୁବର୍ଣ୍ଣ, ରୌପ୍ୟ, ରତ୍ନ, ମଣି ମାଣିକ୍ୟାଦିରେ ନିର୍ମିତ ଅଳଙ୍କାର ବ୍ୟବହାର ହୋଇଥାଏ। ସାଧାରଣତଃ ଏହି ବେଶକୁ ଭୂଷଣ ଶୃଙ୍ଗାର ରୂପେ ଅଭିହିତ କରାଯାଇଥାଏ। ଅତୀତରେ ରାମଚନ୍ଦ୍ରଙ୍କ ଅଭିଷେକ ଉତ୍ସବର ସ୍ମରଣରେ ଏହି ବର୍ଣ୍ଣାଢ୍ୟ ବେଶର ଆୟୋଜନ ହୋଇଥିଲା। ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରା ନାନା ପ୍ରକାର ରତ୍ନ ଅଳଙ୍କାର ପରିଧାନ ପୂର୍ବକ ରାଜକୀୟ ବେଶରେ ଭକ୍ତମାନଙ୍କୁ ଦର୍ଶନ ଦେଇଥାନ୍ତି। କେତେକଙ୍କ ମତରେ ଏହି ବେଶର ପ୍ରବର୍ତ୍ତକ ହେଉଛନ୍ତି ରାମାନୁଜାଚାର୍ଯ୍ୟ। ଗଜପତି ରାମଚନ୍ଦ୍ର ଦେବ ତାଙ୍କ ରାଜତ୍ୱର ୧୧ ଅଙ୍କରେ ଶ୍ରାବଣ ଶୁକ୍ଳ ନବମୀରେ ଠାକୁରମାନଙ୍କୁ ରତ୍ନ ସିଂହାସନରେ ବିଜେ କରାଇ ନିଜକୁ ୪ର୍ଥ ଇନ୍ଦ୍ରଦ୍ୟୁମ୍ନ ବୋଲି ଘୋଷଣା କରିଥିଲେ। ତାଙ୍କର ସିଂହାସନାରୋହଣ ସମୟରେ ସୁବର୍ଣ୍ଣର ରାମାଭିଷେକ ମୋହର ପ୍ରଚଳନ ହୋଇଥିଲା। ସେହି ସମୟରେ ବହୁ ଅର୍ଥ ବ୍ୟୟରେ ନାନାଦି ରତ୍ନ ଅଳଙ୍କାରମାନ ନିର୍ମିତ କରାଇ ସେ ପ୍ରଥମେ ଠାକୁରମାନଙ୍କୁ ରଘୁନାଥ ବେଶ କରାଇଥିଲେ। ସାଧାରଣତଃ ପରମ୍ପରା ଅନୁଯାୟୀ ବୈଶାଖ ମାସର ଯେଉଁଦିନ ରାମଚନ୍ଦ୍ର ଦେବଙ୍କ ଅଭିଷେକ ଉତ୍ସବ ପଡ଼ିଥାଏ, ସେହି ତିଥିରେ ଶ୍ରୀମନ୍ଦିରରେ ରଘୁନାଥ ବେଶ ଅନୁଷ୍ଠିତ ହୋଇଥାଏ। ଶ୍ରୀମନ୍ଦିର ରେକର୍ଡ ରୁମ୍, 'ଉତ୍କଳ ଦୀପିକା' ସମ୍ବାଦପତ୍ର ଇତ୍ୟାଦିରୁ ମିଳୁଥିବା ତଥ୍ୟ ଅନୁଯାୟୀ ମୋଟ୍ ୯ ଥର ରଘୁନାଥ ବେଶ ହୋଇଅଛି ଏବଂ ୧୯୦୫ ମସିହା ପରଠାରୁ ଶ୍ରୀମନ୍ଦିରରେ ଏହି ବେଶ ଆଉ ହୋଇନାହିଁ।

ରଘୁନାଥ ବେଶ ସଂପର୍କରେ ମିଳୁଥିବା କିମ୍ବଦନ୍ତୀ ଅନୁଯାୟୀ ଦଶରଥ ମହାରାଜାଙ୍କର କୌଶଲ୍ୟା, କୈକେୟୀ ଓ ସୁମିତ୍ରା ନାମରେ ତିନି ରାଣୀ ଥିଲେ। ଏହି ପାଟରାଣୀଙ୍କ ବ୍ୟତୀତ ତାଙ୍କର ଆଉ ୭୨ ରାଣୀ ଥିଲେ। ଉକ୍ତ ୭୨ ରାଣୀଙ୍କ ମଧ୍ୟରୁ ଜଣଙ୍କର ଗୋଟିଏ କନ୍ୟା ଜାତ ହୋଇଥିଲା। କାଳେ ରାଣୀମାନଙ୍କ ମଧ୍ୟରେ ଈର୍ଷା ବିବାଦ ଉପୁଜିବ, ସେଥିଲାଗି ସେ ପୂର୍ବରୁ ସତ୍ୟ ଅନୁଯାୟୀ ନିଜର ସଖା ରାଜର୍ଷି ଯାଜ୍ଞବଲ୍କଙ୍କୁ ନବଜାତ କନ୍ୟାକୁ ପୋଷ୍ୟ ପୁତ୍ରୀ ଭାବରେ ଦାନ କରିଥିଲେ। ସେତେବେଳକୁ ରାମଚନ୍ଦ୍ର ଜନ୍ମ ହୋଇ ନଥିଲେ। ଯାଜ୍ଞବଲ୍କ ଉକ୍ତ କନ୍ୟାଟିକୁ ଋଷ୍ୟଶୃଙ୍ଗଙ୍କୁ ପରିଣୟ ସୂତ୍ରରେ ଦାନ କରିଥିଲେ।

ସୁତରାଂ ରାମଚନ୍ଦ୍ରଙ୍କର ଗୋଟିଏ ବଡ଼ ଭଉଣୀ ଥିଲା। ତେଣୁ ରଘୁନାଥ ବେଶ ସମୟରେ ସୁଭଦ୍ରା ଦେବୀ ଯୋଗମାୟା ବେଶରେ ରହିବା ଉଚିତ ବୋଲି କେତେକ ବିଶ୍ୱାସ କରିଥାନ୍ତି। ସାଧାରଣତଃ ରାମଜନ୍ମ ତିଥି ପୁଷ୍ୟା ନକ୍ଷତ୍ରଯୁକ୍ତ ହୋଇଥିଲେ ରଘୁନାଥ ବେଶ ହୋଇଥାଏ।

# ଚନ୍ଦନଲାଗି ବେଶ

ଶ୍ରୀମନ୍ଦିରରେ ଠାକୁରମାନଙ୍କ ଦୈନନ୍ଦିନ ନୀତି ମଧ୍ୟରେ ଚନ୍ଦନଲାଗି ବେଶ ଅନ୍ୟତମ। ପ୍ରତ୍ୟହ ସନ୍ଧ୍ୟାଧୂପ ପରେ ଠାକୁରମାନଙ୍କ ପୂର୍ବ ବେଶ ଓଲାଗି କରାଯାଇ ଚନ୍ଦନ ଲାଗି କରାଯାଇଥାଏ। ପ୍ରତ୍ୟହ ରାତ୍ର ୧୦ ଘଣ୍ଟା ସମୟରେ ଠାକୁରମାନଙ୍କ ମଇଲମ ଓ ଚନ୍ଦନ ଲାଗି ହେବା ନିୟମ। ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଯୋଗାଯାଉଥିବା ଚନ୍ଦନ ଓ କର୍ପୂର ଇତ୍ୟାଦି ସୁଗନ୍ଧି ଦ୍ରବ୍ୟ ଘଟୁଆରୀ ନେଇ ଶିଳରେ ଘୋରି ମୁଦୁଲି ଠାରୁ ନେଇଥିବା ୩ ଗୋଟି ରୁପା ପିଙ୍ଗଣରେ ରଖେ। ମଇଲମ ବଢ଼ିବା ପରେ ପାଳିଆ ମେକାପ ହାତ ଧୋଇ ଘଟୁଆରୀ ଠାରୁ ଉକ୍ତ ରୁପା ପିଙ୍ଗଣ ୩ ଗୋଟି ନେଇ ସିଂହାସନ ନିକଟକୁ ଯିବା ସମୟରେ ପାଳିଆ ପ୍ରତିହାରୀ ଆଗରେ ବେତ ଧରି 'ଆଡ଼େଇ ଯାଆ ଆଡ଼େଇ ଯାଆ' କହି ସିଂହାସନ ସମ୍ମୁଖକୁ ଯାଇଥାନ୍ତି। ଏହାପରେ ଗରାବଡୁ ପାଳିଆ ପୁଷ୍ପାଳକମାନଙ୍କୁ ହାତ ଧୋଇବାକୁ ପାଣି ଦେଇଥାନ୍ତି। ପାଳିଆ ମେକାପ ପିଙ୍ଗଣ ନେଇ ୩ ବାଡ଼ରେ ସିଂହାସନ ଉପରେ ରଖନ୍ତି। ପାଳିଆ ପୁଷ୍ପାଳକମାନେ ଠାକୁରମାନଙ୍କ ଚନ୍ଦନକୁ ସଂସ୍କାର ପୂର୍ବକ ଶ୍ରୀଅଙ୍ଗରେ ଲାଗି କରାଇଥାନ୍ତି। ଏହି ସମୟରେ ଶ୍ରୀଜଗନ୍ନାଥଙ୍କ ପାଖରେ ପାଳିଆ ଖୁଣ୍ଟିଆ ବେତ ବାଡ଼ି ଧରି 'ମଣିମା' ଡାକ ଦେଉଥାନ୍ତି। ହଡ଼ପ ନାଏକ ଠାକୁରମାନଙ୍କୁ ବିଡ଼ିଆ ମଣୋହି କରାଇଥାନ୍ତି।

ପ୍ରତିଦିନ ଅନୁଷ୍ଠିତ ହେଉଥିବା ଚନ୍ଦନଲାଗି ବେଶ ବ୍ୟତୀତ ଚନ୍ଦନ ଯାତ୍ରା ସମୟରେ ଠାକୁରମାନଙ୍କର ବିଶେଷ ବା ସ୍ୱତନ୍ତ୍ର ଧରଣର ଚନ୍ଦନଲାଗି ବେଶ ହୋଇଥାଏ। ଏହା ଅକ୍ଷୟ ତୃତୀୟା ଠାରୁ ଆରମ୍ଭ ହୋଇ ଦୀର୍ଘ ୪୨ ଦିନ ଧରି ଅର୍ଥାତ୍ ଜ୍ୟେଷ୍ଠ ଶୁକ୍ଳ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥାଏ। ଏହି ୪୨ ଦିନ ମଧ୍ୟରୁ ପ୍ରଥମ ୨୧ ଦିନକୁ 'ବାହାର ଚନ୍ଦନ' ଓ ପରବର୍ତ୍ତୀ ୨୧ ଦିନକୁ 'ଭିତର ଚନ୍ଦନ' କୁହାଯାଇଥାଏ।

ଅକ୍ଷୟ ତୃତୀୟା ପୂର୍ବଦିନ ରାତ୍ର ଚନ୍ଦନଲାଗି ନୀତି ଶେଷ ହେବାପରେ ପାଳିଆ ମେକାପ ରାଘବ ଦାସ ମଠ ଦେଇଥିବା ସାଢ଼େ ସାତ ସେର ଚନ୍ଦନ ତିନିଗୋଟି ରୁପା ପିଙ୍ଗଣରେ ଓ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଦିଆଯାଇଥିବା ସାଢ଼େ ସାତ ସେର ଚନ୍ଦନ ପରଖରେ ରଖି ଭୋଗମଣ୍ଡପ ଘରକୁ ନେଇଥାନ୍ତି। ଅକ୍ଷୟ ତୃତୀୟା ଦିନ ସକାଳ ଧୂପ ସରିବା ଉତ୍ତାରେ ରତ୍ନ ସିଂହାସନରେ ତିନି ବାଡ଼ରେ ମଇଲମ ହୋଇ ମହାସ୍ନାନ ବଢ଼େ। ଏହାପରେ ପୂର୍ବଦିନ ଅଧିବାସ ହୋଇଥିବା ଚନ୍ଦନକୁ ଭୋଗମଣ୍ଡପ ଘରଠାରୁ ପୂଜାପଣ୍ଡା, ପତିମହାପାତ୍ର, ମୁଦିରସ୍ତ ଓ ଭିତରେ ମଇଲମ ବଢ଼ାଇଥିବା ପାଳିଆ ପୁଷ୍ପାଳକ ଏହିପରି ୬ ଜଣ ସେବକ ଯାଇ ପିଙ୍ଗଣମାନଙ୍କୁ ଘଣ୍ଟ, ଛତା, କାହାଳି ସହ ତଳିଛ ପଟୁଆର ହୋଇ ବଡ଼ ଦେଉଳକୁ ତିନି ଘେରା ପରିକ୍ରମା କରାଇ ଭିତର ସିଂହାସନ ଉପରେ ତିନି ବାଡ଼ରେ ରଖନ୍ତି। ପରଖରେ ଥିବା ଚନ୍ଦନ ପାଳିଆ ମେକାପ ସିଂହାସନ ଉପରେ ରଖନ୍ତି। ଏହାପରେ ଭିତରେ ପାଣି ପଡ଼ି ଶୀତଳ ଭୋଗ ହୋଇଥାଏ। ଭୋଗ ଶେଷ ପରେ ଶ୍ରୀଜୀଉମାନଙ୍କ ଶ୍ରୀଅଙ୍ଗରେ ସଂପୂର୍ଣ୍ଣ ଚନ୍ଦନ ଲାଗି ହୋଇଥାଏ। ବିଶେଷତଃ ଏହି ୪୨ ଦିନ ଯାକ ଜୟ ବିଜୟ ଦ୍ୱାର ବନ୍ଦ କରାଯାଇ ଆଲଟ କରାଯାଏ।

# ଗଜାନନ (ହାତୀ) ବେଶ

ଶ୍ରୀମନ୍ଦିରରେ ପାଳିତ ଦ୍ୱାଦଶ ଯାତ୍ରା ମଧ୍ୟରୁ ସ୍ନାନଯାତ୍ରା ଅନ୍ୟତମ । ଏହି ଯାତ୍ରା ପ୍ରତିବର୍ଷ ଜ୍ୟେଷ୍ଠମାସ ପୂର୍ଣ୍ଣିମା ତିଥିରେ ପାଳିତ ହୋଇଥାଏ । ସ୍ନାନଯାତ୍ରା ଦେବସ୍ନାନ ପୂର୍ଣ୍ଣିମା ନାମରେ ମଧ୍ୟ ଲୋକମୁଖରେ ବିଦିତ । ଜ୍ୟେଷ୍ଠ ପୂର୍ଣ୍ଣିମା ତିଥିରେ ଚତୁର୍ଦ୍ଧା ମୂର୍ତ୍ତି ପହଣ୍ଡି ବିଜେରେ ଆନନ୍ଦବଜାରସ୍ଥିତ ସ୍ନାନମଣ୍ଡପ (ବେଦୀ) ଉପରେ ବିରାଜମାନ କରିଥାନ୍ତି । ଏହି ମଣ୍ଡପ ବା ବେଦୀ ଉପରେ ଠାକୁରମାନଙ୍କର ପ୍ରସିଦ୍ଧ ଗଜାନନ ବେଶ ହୋଇଥାଏ ।

ପରମ୍ପରା ଅନୁଯାୟୀ ସ୍ନାନ ମଣ୍ଡପରେ ବିରାଜିତ ଶ୍ରୀଜୀଉମାନଙ୍କର ସ୍ନାନ ନୀତି ପରେ ଗୋପାଳ ତୀର୍ଥ ମଠ ଓ ରାଘବ ଦାସ ମଠରୁ ଆସିଥିବା 'ଗଜାନନ ବେଶ' ଉପକରଣ ଯଥାକ୍ରମେ ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ, ଶ୍ରୀସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କୁ ଲାଗି କରାଯାଏ । ଗଜାନନ ବେଶ ସଂପର୍କରେ ଶ୍ରୀମନ୍ଦିର ସ୍ୱତ୍ୱଲିପିରେ ଉଲ୍ଲେଖ ଅଛି ଯେ, 'ସ୍ନାନ ମଣ୍ଡପରେ ଶ୍ରୀବିଗ୍ରହମାନଙ୍କର ଜଳ ଲାଗି ନୀତି ବଢ଼ିବା ପରେ ଲେଙ୍କା ଓ ଘଣ୍ଟ କାହାଳୀ ସହ ଗୋପାଳତୀର୍ଥ ମଠାରୁ ବଡ଼ ବାଡ଼ (ବଳଭଦ୍ରଙ୍କ ବାଡ଼) ଓ ଶ୍ରୀସୁଦର୍ଶନଙ୍କର ଗଜାନନ ବେଶ ଉପକରଣମାନ ଆଣିବାକୁ ଯାଆନ୍ତି । ଏହାପରେ ଗଜପତି ମହାରାଜା କିମ୍ବା ତାଙ୍କ ଅନୁପସ୍ଥିତିରେ ମୁଦିରସ୍ତ ତିନି ବାଡ଼ରେ ରାଜ ନୀତି କରନ୍ତି । ରାଜ ନୀତି ବଢ଼ିବା ପରେ ସ୍ନାନ ମଣ୍ଡପରେ ଛେରା ପହଁରା ହୋଇଥାଏ । ତତ୍ପରେ ସୁଆରବଡ଼ୁ ସେବକ ପାଣି ପକାନ୍ତି । ପାଣି ପଡ଼ିଲା ପରେ ଜଗମୋହନରେ ଥିବା ବଡ଼ବାଡ଼ର (ବଳଭଦ୍ର) ବେଶ ଉପକରଣ ଓ ରାଘବ ଦାସ ମଠରୁ ଆସିଥିବା ଅନ୍ୟ ଦୁଇ ବାଡ଼ (ଜଗନ୍ନାଥ, ସୁଭଦ୍ରା)ର ବେଶ ଉପକରଣମାନ ସ୍ନାନ ମଣ୍ଡପରେ ରଖାହୁଏ । ଭିତରଚ୍ଛ, ତଳିଚ୍ଛ, ପୁଷ୍ପାଳକ, ଖୁଣ୍ଟିଆ, ଦଇତାପତିମାନଙ୍କ ସହ ତିନିବାଡ଼ରେ ହାତୀ ବେଶ କରନ୍ତି । ବେଶ ବଢ଼ିବା ପରେ ତିନି ବାଡ଼ରେ କର୍ପୂର ଲାଗି ହୋଇଥାଏ ଏବଂ ପରେ ପରେ ସ୍ନାନ ବେଦୀ ଉପରେ ଶୋଧ କରାଯାଏ ଓ ଭୋଗ ପାଇଁ ପ୍ରସ୍ତୁତି ହୋଇଥାଏ । ସୂଚନାଯୋଗ୍ୟ ଯେ ଏହି ଦିନ ମାତ୍ର ଗୋଟିଏ ଭୋଗ ହୋଇଥାଏ । ଭୋଗ ଶେଷ ପରେ ସ୍ନାନ ବେଦୀ ଉପରକୁ ସର୍ବସାଧାରଣଙ୍କୁ ଦର୍ଶନ ନିମିତ୍ତ ଅନୁମତି ଦିଆଯାଇଥାଏ ।'

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ହାତୀ ବା ଗଜାନନ ବେଶ ସଂପର୍କରେ ରହିଥିବା କିମ୍ବଦନ୍ତୀ ଅନୁଯାୟୀ ପଞ୍ଚଦଶ ଶତାବ୍ଦୀରେ ମହାରାଷ୍ଟ୍ରରୁ ମହାଗାଣପତ୍ୟ ସମ୍ପ୍ରଦାୟର ଶ୍ରୀ ଗଣପତି ଭଟ୍ଟ ନାମକ ଜନୈକ ବିଶିଷ୍ଟ ପଣ୍ଡିତ ଶ୍ରୀକ୍ଷେତ୍ରକୁ ଆଗମନ କରିଥିଲେ । ସେ ପ୍ରଭୁ ଗଣେଶଙ୍କର ବଡ଼ ଭକ୍ତ ଥିଲେ । ସ୍ନାନ ପୂର୍ଣ୍ଣମୀ ଦିନ ଶ୍ରୀମନ୍ଦିରରୁ ପ୍ରବେଶ କରି ସ୍ନାନ ମଣ୍ଡପରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଦର୍ଶନ କରି ଗଣପତି ଭଟ୍ଟ ସନ୍ତୋଷ ଲାଭ କଲେ ନାହିଁ । ତେଣୁ ନିରାଶ ମନରେ ଶ୍ରୀକ୍ଷେତ୍ରରୁ ଫେରି କିଛି ବାଟ ଯିବା ପରେ ମୁକ୍ତେଶ୍ୱର ଠାରେ ଶୂନ୍ୟବାଣୀ ଶୁଣି ପୁନଶ୍ଚ ଶ୍ରୀମନ୍ଦିରକୁ ଫେରିଆସି ଦେଖନ୍ତି ଯେ, ଠାକୁରମାନେ ତାଙ୍କର ଇଷ୍ଟ ଗଣପତି ରୂପ ଧାରଣ କରି ଧବଳ ରୂପରେ ବଳଭଦ୍ର ଓ କଳା ଗଣେଶ ରୂପରେ ଜଗନ୍ନାଥ ଶୋଭା ପାଉଛନ୍ତି । ଗଣପତି ଭଟ୍ଟ ଏହି ଦୃଶ୍ୟ ଦେଖି ଭକ୍ତି ବିଭୋର ହୋଇପଡ଼ିଲେ ଓ ତତ୍କ୍ଷଣାତ୍ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଚରଣାରବିନ୍ଦରେ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ପ୍ରାର୍ଥନା କରିଥିଲେ । ଗଣପତି ଭଟ୍ଟଙ୍କ 'ଗଣପତି ବେଶ' ଦର୍ଶନର ସ୍ମାରକୀ ସ୍ୱରୂପ ଏହି ବେଶ ହୋଇ ଆସୁଅଛି ।'

# ଘୋଡ଼ଲାଗି ବେଶ

ସାଧାରଣ ମଣିଷ ଶୀତଋତୁରେ ଶୀତ ବସ୍ତ୍ର ପରିଧାନ କଲାଭଳି ସ୍ୱୟଂ ଜଗନ୍ନାଥ ମହାପ୍ରଭୁ ମଧ୍ୟ ଶୀତଦିନ ଶୀତ ବସ୍ତ୍ରରେ ଭୂଷିତ ହୋଇଥାନ୍ତି । ଶ୍ରୀମନ୍ଦିର ଭାଷାରେ ଏହି ବସ୍ତ୍ରକୁ 'ଘୋଡ଼ଲାଗି' ବେଶ କୁହାଯାଇଥାଏ । ସାଧାରଣତଃ ତିନି ଠାକୁର ଯଥା ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରାଙ୍କ ନିମନ୍ତେ ଘୋଡ଼ ବସ୍ତ୍ର ନିର୍ମିତ କରାଯାଇଥାଏ । ଓଢ଼ଣ ଷଷ୍ଠୀ (ପ୍ରାବରଣ ଷଷ୍ଠୀ) ଠାରୁ ମାଘ ଶୁକ୍ଳ ପଞ୍ଚମୀ ଯାଏଁ ଦୈନନ୍ଦିନ ଅବକାଶ ପରେ ଓ ମଧ୍ୟାହ୍ନ ଧୂପ ପରେ ଠାକୁରମାନେ ଏହି ଘୋଡ଼ ବେଶ ପରିଧାନ କରିଥାନ୍ତି । 'ଘୋଡ଼ଲାଗି' ବେଶରେ ଗଡ଼ା (ସୂତା ବସ୍ତ୍ର), ଖଣ୍ଡୁଆ ପାଟ, ଭେଲ୍‌ଭେଟ୍‌ର ଘୋଡ଼ ବସ୍ତ୍ର, ଫୁଟା, ମଫଲର୍, ଟୋପର ଆଦି ବ୍ୟବହୃତ ହୋଇଥାଏ । ଉକ୍ତ ଘୋଡ଼ଲାଗି ବେଶ ମଧ୍ୟରେ ମକର ଚଉରାଶୀ ମକରଚୂଳ ଲାଗି ହୋଇଥାନ୍ତି ।

ପରମ୍ପରା ଅନୁଯାୟୀ ଠାକୁରମାନେ ପ୍ରତ୍ୟେକ ବାରରେ ଭିନ୍ନ ଭିନ୍ନ ରଙ୍ଗର ଘୋଡ଼ ବସ୍ତ୍ର ଲାଗି ହୋଇଥାନ୍ତି । ଯଥା- ରବିବାର - ଲାଲ ରଙ୍ଗ, ସୋମବାର -କଳାଛିଟ ମିଶା ଧଳା ରଙ୍ଗ, ମଙ୍ଗଳବାର - ବାର ପଟିଆ (ପଞ୍ଚରଙ୍ଗ ମିଶା), ବୁଧବାର - ନୀଳରଙ୍ଗ, ଗୁରୁବାର - ବସନ୍ତ (ହଳଦିଆ) ରଙ୍ଗ, ଶୁକ୍ରବାର - ଧଳା ରଙ୍ଗ, ଶନିବାର - କଳା ରଙ୍ଗ ।

ସାତ ଦିନରେ ଘୋଡ଼ ରଙ୍ଗକୁ ଜ୍ୟୋତିଷ ଶାସ୍ତ୍ରଜ୍ଞ ମାନେ ଭିନ୍ନ ଭିନ୍ନ ଗ୍ରହର ପ୍ରତୀକ ବୋଲି କହିଥାନ୍ତି । ଠାକୁରମାନଙ୍କ ଘୋଡ଼ଲାଗି ସମୟରେ ପୂଜାପଣ୍ଡାମାନେ ସିଂହାସନ ତଳେ ବସି ପୂଜା କରିଥାନ୍ତି । ଖରା ସମୟରେ ଶୀତ କମ୍ ରହୁଥିବାରୁ ସାଧାରଣତଃ ଦ୍ୱିପ୍ରହର ଧୂପ ପୂଜା ସମୟରେ ଠାକୁରମାନେ ଘୋଡ଼ ବସ୍ତ୍ର ପିନ୍ଧନ୍ତି ନାହିଁ । ଘୋଡ଼ଲାଗି ବେଶରେ ଠାକୁରମାନେ ଆଠ ମୂର୍ତ୍ତି ସୁନା ଅଳଙ୍କାର ପରିଧାନ କରିଥାନ୍ତି । ତିନି ଠାକୁରଙ୍କ ନିମନ୍ତେ ୧୪ ହାତ ଲମ୍ବ ଓ ୩ ହାତ ଓସାରର ୪ ଖଣ୍ଡ ପାଟ ଆବଶ୍ୟକ ପଡ଼ିଥାଏ ।

ଶୀତର ପ୍ରକୋପ କମି ଆସିଲେ ସାଧାରଣ ଲୋକେ ଯେପରି କମ୍ବଳ, ସ୍ୱେଟର ବ୍ୟବହାର ନକରି ପତଳା ଚାଦର ବା ଗରମ କନାର ଜାମା ପରିଧାନ କରିଥାନ୍ତି, ଠିକ୍ ସେହିପରି ଠାକୁରମାନେ ବସନ୍ତ ପଞ୍ଚମୀଠାରୁ ଫଗୁ ଦଶମୀ ଯାଏଁ ଜାମା ବା ଠିଆ ଘୋଡ଼ ପରିଧାନ କରିଥାନ୍ତି । ଏହି ଘୋଡ଼ରେ ବିଗ୍ରହମାନଙ୍କ ଶ୍ରୀଅଙ୍ଗ ସଂପୂର୍ଣ୍ଣ ଘୋଡ଼ାଇ ହୁଏ ନାହିଁ । ସୂଚନାଯୋଗ୍ୟ ଯେ ଜାମାଲାଗି ବେଶରେ ଠାକୁରମାନେ ୩୦ ମୂର୍ତ୍ତି ସୁନା ଅଳଙ୍କାର ପରିଧାନ କରିଥାନ୍ତି । ଘୋଡ଼ ବସ୍ତ୍ରମାନ ସାଧାରଣତଃ ମଖମଲ୍ ଓ ସୂତା କପଡ଼ାରେ, ଶ୍ରୀମନ୍ଦିର ପାରମ୍ପରିକ ଦରଜି ସେବକମାନଙ୍କ ଦ୍ୱାରା ଏକ ସ୍ୱତନ୍ତ୍ର ଶୈଳୀରେ ନିର୍ମିତ ହୋଇଥାଏ ।

# ନବାଙ୍କ ବେଶ

ମକର ସଂକ୍ରାନ୍ତି ପୂର୍ବଦିନ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନବାଙ୍କ ବେଶ ସହ ଚାଉଳ ମେଳାଣ ଓ ଫୁଲ ମେଳାଣ ଉତ୍ସବ ଅନୁଷ୍ଠିତ ହୋଇଥାଏ। ଉକ୍ତ ଦିନ ସନ୍ଧ୍ୟା ଆଳତି ବେଶରେ ମାଳଚୂଳମାନ ଖୁଣ୍ଟିଆ ଓ ପୁଷ୍ପାଳକ ସେବକଙ୍କ ସହାୟତାରେ ଠାକୁରମାନଙ୍କୁ ଲାଗି କରାଯାଇଥାଏ।

ଉକ୍ତ ଦିନ ବଡ଼ସିଂହାର ବେଶରେ ସୋଲ ଓ ଜରି, କଇଁଥ ଅଠାରେ ପ୍ରସ୍ତୁତ ଶଙ୍ଖ, ଚକ୍ର, ହଳ, ମୁଷଳ, କୁଣ୍ଡଳ, ତଡଗୀ ଇତ୍ୟାଦି ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରାଙ୍କୁ ଲାଗି କରାଯାଇଥାଏ। ଏ ବେଶରେ ଶ୍ରୀଜଗନ୍ନାଥ ଓ ବଳଭଦ୍ର ଯଥାକ୍ରମେ ସୋଲ ନିର୍ମିତ ମକର କୁଣ୍ଡଳ ଓ ଶଙ୍ଖ, ଚକ୍ର, ହଳ, ମୁଷଳ ଇତ୍ୟାଦି ଧାରଣ କରିଥାନ୍ତି। ଏହି ବେଶ 'ନବାଙ୍କ ବେଶ' ରୂପେ ପରିଚିତ।

ପୂର୍ବେ ଏହି ବେଶର ସାମଗ୍ରୀ ଦକ୍ଷିଣପାର୍ଶ୍ୱ ମଠ (ଶ୍ରୀରାମ ଦାସ ମଠ) ଯୋଗାଇ ଆସୁଥିଲେ। ଗତ କିଛି ବର୍ଷ ଧରି ସଂପୃକ୍ତ ମଠ ବେଶ ସାମଗ୍ରୀ ଯୋଗାଉ ନଥିବା ଜଣାଯାଏ। ସଂପ୍ରତି ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଏହି ବେଶର ସମସ୍ତ ଖର୍ଚ୍ଚ ନିର୍ବାହ କରାଯାଉଅଛି।

ନବାଙ୍କ ବେଶରେ ଠାକୁରମାନଙ୍କ ଶିରରୁ ରତ୍ନସିଂହାସନ ବଟାଣ ଯାଏ ଗେଣ୍ଡୁଫୁଲର ମାଳରେ ସୁସଜ୍ଜିତ କରାଯାଏ। ବଡ଼ସିଂହାର ବେଶରେ ଦେବତାମାନଙ୍କୁ ଅଳଙ୍କୃତ କରୁଥିବା ଚିତା, ଗୁଣା, କରପଲ୍ଲବ, ଅଧରମାଳା ଓ ଶ୍ରୀପୟର ମାଳା ମଧ୍ୟ ପ୍ରଧାନତଃ ଗେଣ୍ଡୁ ଫୁଲରେ ନିର୍ମିତ ହୋଇଥାଏ। ହୃଦ ପଦକରେ ଗେଣ୍ଡୁ ଫୁଲ ସହିତ ଗୋଲାପ ଫୁଲର ସମ୍ମିଶ୍ରଣ ଘଟିଥାଏ। ସାଧାରଣ ଦିନମାନଙ୍କରେ ଚାରି ପାଞ୍ଚଟି ମାଳ ଲାଗୁଥିଲେ ମଧ୍ୟ ନବାଙ୍କ ବେଶ ଦିନ ଦଶ ପନ୍ଦରଟି ମାଳ ଲାଗିହୁଏ। ଏ ଦିନ ଲାଗୁଥିବା ଶିର ଭୂଷଣ ଓ ଚୋପରଗୁଡ଼ିକ ତୁଳସୀପତ୍ର ଦ୍ୱାରା ପ୍ରସ୍ତୁତ ହୋଇଥାଏ ଏବଂ ସେହି ଚୋପର ଉପରେ ଗେଣ୍ଡୁ ଫୁଲର ମାଳା ଗୁଡ଼ା ଯାଇଥାଏ।

ମକର ସଂକ୍ରାନ୍ତି ପୂର୍ବ ଦିନ ଅନୁଷ୍ଠିତ ହେଉଥିବା ଏହି ବେଶରେ ବହୁଳ ଭାବରେ ଗେଣ୍ଡୁ ଫୁଲ ବ୍ୟବହାର ହେଉଥିବା କାରଣ ହେଉଛି ଏହି ସମୟରେ ଅଧିକ ଗେଣ୍ଡୁ ଫୁଲ ମିଳେ। ନବାଙ୍କ ବେଶ ସହିତ ନବାଙ୍କ ବେଢ଼ାର ମଧ୍ୟ ତାତ୍ପର୍ଯ୍ୟ ରହିଛି। ଏହି ଦିନ ବଡ଼ସିଂହାର ଭୋଗ ପରେ ମଦନମୋହନ ଦକ୍ଷିଣ ଘରୁ ବିଜେ କରି ରତ୍ନ ସିଂହାସନକୁ ଆସନ୍ତି। ସେଠାରୁ ଆଜ୍ଞାମାଳ ପାଇ ରତ୍ନ ସିଂହାସନକୁ ସାଢ଼େ ଚାରିଥର ପ୍ରଦକ୍ଷିଣ କରି ବଟମୂଳେ ଥିବା ପାଲିଙ୍କିରେ ବିଜେ କରି ଦେଉଳ ଚାରିପାଖକୁ ସାଢ଼େ ଚାରିଥର ପ୍ରଦକ୍ଷିଣ କରନ୍ତି।

# ବନଭୋଜି ବେଶ

ପ୍ରତିବର୍ଷ ଭାଦ୍ରବ ମାସରେ ଅନୁଷ୍ଠିତ ହେଉଥିବା କୃଷ୍ଣ ଭାବାତ୍ମକ ବେଶ ଯଥା ବନଭୋଜି, କାଳୀୟଦଳନ, ପ୍ରଳମ୍ବାସୁର ବଧ, କୃଷ୍ଣ ବଳରାମ ଇତ୍ୟାଦି ବେଶ ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରୁ ପ୍ରବର୍ତ୍ତିତ ହୋଇଆସୁଅଛି । ତତ୍କାଳୀନ ଗଜପତିଙ୍କ ଉପଦେଷ୍ଟା ରାୟ ରାମାନନ୍ଦ ଓ ସ୍ୱୟଂ ଶ୍ରୀ ଚୈତନ୍ୟଙ୍କ ପ୍ରଭାବରେ ହିଁ ଠାକୁରମାନଙ୍କ ଏହି ଆକର୍ଷଣୀୟ ବନଭୋଜି ବେଶ ପ୍ରଚଳନ ହୋଇଥିବା ଅନୁମାନ କରାଯାଏ । ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କୁ ସାକ୍ଷାତ କୃଷ୍ଣ ଓ ବଳରାମ ରୂପରେ ସଜାଇ ବନଭୋଜି ନିମନ୍ତେ ଗମନ କରୁଥିବା ଦୃଶ୍ୟକୁ ସ୍ମରଣ କରାଇଦେବା ହେଉଛି ଏ ବେଶର ମୁଖ୍ୟ ଉଦ୍ଦେଶ୍ୟ ।

ପରମ୍ପରା ଅନୁଯାୟୀ ଭାଦ୍ରବ କୃଷ୍ଣ ଦଶମୀ ତିଥିରେ ଶ୍ରୀଜୀଉମାନଙ୍କର 'ବନଭୋଜି ବେଶ' ଅନୁଷ୍ଠିତ ହୋଇଥାଏ । ଏହିଦିନ ମଧ୍ୟାହ୍ନ ଧୂପ ବେଶରେ ଦୁଇଖଣ୍ଡ ଆଜ୍ଞାମାଳ (ବଡ଼ ବାଡ଼ରେ ଏକ ଖଣ୍ଡ, ମହାପ୍ରଭୁଙ୍କ ବାଡ଼ରେ ଏକ ଖଣ୍ଡ) ଲାଗି ହୁଏ । ମଧ୍ୟାହ୍ନ ଧୂପ ସରି ଭିତରେ ପାଣି ପଡ଼ିଲା ଉତ୍ତାରେ ବଡ଼ ବାଡ଼ରୁ ଏକ ଖଣ୍ଡ ଓ ଜଗନ୍ନାଥଙ୍କ ବାଡ଼ରୁ ଏକ ଖଣ୍ଡ ଆଜ୍ଞାମାଳ ଅଣାଯାଇ ସେହି ଆଜ୍ଞାମାଳ ଯଥାକ୍ରମେ ଦକ୍ଷିଣ ଘରେ ଥିବା ରାମ ଓ କୃଷ୍ଣ ମୂର୍ତ୍ତିକୁ ଦିଆଯାଏ । ଏହାପରେ ରାମକୃଷ୍ଣ ଦୁଇ ମୂର୍ତ୍ତିଙ୍କୁ ହସ୍ତରେ ବିଜେ କରି ବଟଦ୍ୱାରଠାରେ ଥିବା ପାଲିଙ୍କିରେ ବିଜେ କରାନ୍ତି । ବିମାନବଡୁମାନେ ଘଣ୍ଟ, ଛତା ଓ କାହାଳି ସହ ପାଲିଙ୍କି ନେଇ ମନ୍ଦିର ବାହାର (ବଡ଼ଛତାମଠ ନିକଟ) କାଷ୍ଠ ସିଂହାସନରେ ଦିହିଁଙ୍କୁ ବିଜେ କରାନ୍ତି । ଏଠାରେ କୋଳିବିକା ନୀତି ହୁଏ । ଏହାପରେ ପୁଷ୍ପାଳକମାନେ ତିନି ବାଡ଼ରେ ସନ୍ଧ୍ୟାଧୂପ ବେଶରେ ବନଭୋଜି କରନ୍ତି । ବନଭୋଜି ବେଶରେ ଠାକୁରମାନଙ୍କୁ ବିଭିନ୍ନ ସ୍ୱର୍ଣ୍ଣ ଅଳଙ୍କାର ଲାଗି ହୋଇଥାଏ । ଦୁଇ ଠାକୁର ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କ ମସ୍ତକ ଉପରେ ସୋଲ, ବେତ ଓ କନାରେ ନିର୍ମିତ ଚୂଳରେ ସ୍ୱର୍ଣ୍ଣ କିଆ ଖୋସା ଯାଇଥାଏ । ଦୁଇ ଠାକୁରଙ୍କ ଶ୍ରୀହସ୍ତରେ ଶିକାରେ (କନା ଓ ଜରିରେ ନିର୍ମିତ ପ୍ରାୟ ୪ ଫୁଟ୍‌ର ଲମ୍ବା ଶିକା) ରୁପା ପିଙ୍ଗଣ ମଧ୍ୟରେ 'ସର' ରଖାଯାଏ ଓ ଅନ୍ୟ ହସ୍ତରେ ଏକ ଯଷ୍ଟି (କାଠ ବାଡ଼ି) ଧରନ୍ତି । ଉଲ୍ଲେଖଯୋଗ୍ୟ ଯେ ଏହି ବେଶରେ ଠାକୁରମାନେ ଏକ ସ୍ୱତନ୍ତ୍ର ଧରଣର ଦୁଇଟି ପେଡ଼ା (ଖୁଆ ପେଡ଼ା) ମାଳି ଧାରଣ କରିଥାନ୍ତି । ଏତଦ୍ ବ୍ୟତୀତ ଶ୍ରୀମନ୍ଦିର ପ୍ରଶାସନ ତରଫରୁ ଦୁଇ ବାଡ଼ର ଶିକା ସର ଯୋଗ ହୁଏ ଓ ମଝିବାଡ଼ ସକାଶେ ଜଗନ୍ନାଥ ବଲ୍ଲଭ ମଠରୁ ଆସିଥାଏ । ପରମ୍ପରା ଅନୁଯାୟୀ ପୁରୀ ମହାଭୋଇ ସେବକମାନେ ଏ ସର ନେଇ ଶ୍ରୀମନ୍ଦିରକୁ ଯାଇଥାନ୍ତି ।

ପୁରାଣାଦିମାନଙ୍କରେ ବର୍ଣ୍ଣନା ଅଛି ଯେ, ଗୋପଲୀଳା ସମୟରେ କୃଷ୍ଣଓ ବଳରାମ ଗାଈ ବାଛୁରୀ ସଙ୍ଗରେ ନେଇ ବନଭୋଜି ଉଦ୍ଦେଶ୍ୟରେ ଗମନ କରିଥିଲେ । ଏହି ଦୃଶ୍ୟକୁ ସ୍ମରଣ କରାଇ ଶ୍ରୀମନ୍ଦିରରେ ବନଭୋଜି ବେଶ ଅନୁଷ୍ଠିତ ହୋଇଥାଏ । ଏହି ବେଶରେ ରତ୍ନ ସିଂହାସନ ଉପରେ ଦୁଇଟି ଲେଖାଏଁ ଗାଈ ବାଛୁରୀ (କାଠରେ ନିର୍ମିତ) ଦଣ୍ଡାୟମାନ ଅବସ୍ଥାରେ ରହିଥାନ୍ତି ।

# କାଳୀୟଦଳନ ବେଶ

ପ୍ରସିଦ୍ଧ ଯମୁନା ନଦୀ ତଟବର୍ତ୍ତୀ କାଳିନ୍ଦୀ ହ୍ରଦରେ ଅବସ୍ଥାନ କରୁଥିବା କାଳୀୟ ନାମକ ଏକ ଭୟଙ୍କର ସର୍ପକୁ ଶ୍ରୀକୃଷ୍ଣ ଦଳନ କରିଥିବା ଆଖ୍ୟାୟିକାର ସ୍ମୃତିରେ ପୁରୀ ଶ୍ରୀମନ୍ଦିରରେ ଏହି ବେଶ କରାଯାଉଥିବା ଜଣାଯାଏ । କେତେକ ଗବେଷକମାନଙ୍କ ମତରେ କାଳୀୟଦଳନ ବେଶର ପ୍ରବର୍ତ୍ତକ ହେଉଛନ୍ତି ଗଜପତି ପ୍ରତାପରୁଦ୍ର ଦେବ (ଷୋଡ଼ଶ ଶତାବ୍ଦୀ) । ଭାଦ୍ରବ କୃଷ୍ଣ ଏକାଦଶୀ ଦିନ ଶ୍ରୀମନ୍ଦିରରେ ମଧ୍ୟାହ୍ନ ଧୂପ ସରି ଭିତରେ ପାଣି ପଡ଼ିଲେ ଓ ଦକ୍ଷିଣ ଘର ଭୋଗ ସରିଲେ ମଦନମୋହନ ଓ ରାମକୃଷ୍ଣ ରତ୍ନ ସିଂହାସନକୁ ବିଜେ କରନ୍ତି । ପୂଜାପଣ୍ଡା ତିନି ମୂର୍ତ୍ତିଙ୍କୁ ଆଜ୍ଞାମାଳ ଦେବା ପରେ (ମହାଜନେ) ପୁଷ୍ପାଳକଙ୍କ ହାତରେ ବିଜେ ହୋଇ ଝୁଲଣ ମଣ୍ଡପ ନିକଟରେ ଥିବା ପାଲିଙ୍କିରେ ବିରାଜିତ ହୋଇଥାନ୍ତି । ତତ୍ପରେ ବଡ଼ ଦେଉଳକୁ ବେଢ଼ାଏ ବୁଲି ଲୋକନାଥ ରୋଡ୍‌ସ୍ଥିତ ଲମଣୀଖିଆ ମଣ୍ଡପକୁ ବିଜେ କରନ୍ତି ଓ ବନ୍ଦାପନା, ଶୀତଳ ଭୋଗ ଇତ୍ୟାଦି ନୀତି ସମାପନ ପରେ ମାର୍କଣ୍ଡ ପୁଷ୍କରିଣୀଠାରେ କାଳୀୟଦଳନ ଲୀଳା ହୁଏ । ସେଠାରେ ଶୀତଳ ଭୋଗ ଓ ବନ୍ଦାପନା ହୋଇ ବାହୁଡ଼ା ବିଜେ ପୂର୍ବକ ଶ୍ରୀମନ୍ଦିରର ଜୟ ବିଜୟ ଦ୍ୱାର ଠାରେ ଏକାଦଶୀ ଭୋଗ ଓ ବନ୍ଦାପନା ବଢ଼ି ଦକ୍ଷିଣୀ ଘରକୁ ବିଜେ କରନ୍ତି । ପରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବାଡ଼ରେ କାଳୀୟଦଳନ ବେଶ ହୁଏ । ବେଶ ବଢ଼ି ସନ୍ଧ୍ୟାଧୂପ ପାଣି ପଡ଼ିଲା ଉତ୍ତାରେ ଜଗନ୍ନାଥ ବଲ୍ଲଭ ମଠରୁ ଆସିଥିବା ବଡ଼ ଅମୃତ ଲଡୁ ପାଳିଆ ଖୁଣ୍ଟିଆ ଠାରୁ ନେଇ ପୁଷ୍ପାଳକ ଶ୍ରୀହସ୍ତରେ ଲାଗି କରନ୍ତି । ମଧ୍ୟାହ୍ନ ଧୂପ ପରେ ରତ୍ନ ସିଂହାସନ ଉପରେ ବିରାଜିତ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ କାଳୀୟଦଳନ ବେଶରେ ସୁସଜ୍ଜିତ କରାଯାଇଥାଏ । ଏହି ବେଶରେ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର କାଷ୍ଠ ନିର୍ମିତ ଶ୍ରୀଭୁଜ ଓ ଶ୍ରୀପୟର ଯୁକ୍ତ ହୋଇଥାନ୍ତି । ବେଶ ପୂର୍ବରୁ ଦରଜି ଓ ମହରଣା, ଚିତ୍ରକାର ଓ ସୋଲ ଶିଳ୍ପୀମାନଙ୍କ ଦ୍ୱାରା ବେତ, ସୂତା ଓ କନାରେ ପ୍ରସ୍ତୁତ ପ୍ରାୟ ୩୦ ଫୁଟ୍ ଲମ୍ବର ଏକ ବିରାଟକାୟ ସପ୍ତ ଫେଣିଆ କାଳୀୟ ସର୍ପ ବା ନାଗଟି ଚାରିଟି ଅଂଶରେ ବିଭକ୍ତ ଅଟେ । ୨ଟି ଅଂଶ ଗଣ୍ଡି, ୧ଟି ଅଂଶ ମୁଣ୍ଡ ଓ ୧ଟି ଅଂଶ ଲାଞ୍ଜ । ସର୍ପଟିର ସମଗ୍ର ଶରୀର କଳା କନାରେ ଆବୃତ ହୋଇଥିବାବେଳେ ଶରୀରର କାତିଗୁଡ଼ିକ ନିମନ୍ତେ ଧଳା କନା ବ୍ୟବହୃତ ହୋଇଥାଏ । ସର୍ପଟିର ଏହି ୪ଟି ଅଂଶ ପୁଷ୍ପାଳକ ସେବକମାନଙ୍କ ଦ୍ୱାରା ରତ୍ନ ସିଂହାସନ ଉପରକୁ ଯାଇଥାଏ । ସେଠାରେ ସଂପୂର୍ଣ୍ଣ ଶରୀରଟିକୁ ଖଞ୍ଜାଯାଇ ସପ୍ତ ଫେଣିଆ ମସ୍ତକଟି ଶ୍ରୀଜଗନ୍ନାଥଙ୍କ ଶ୍ରୀପୟର ବା ପାଦ ତଳେ ରଖାଯାଏ ଓ ଅବଶିଷ୍ଟ ଅଂଶ ଠାକୁରଙ୍କ ସମଗ୍ର ଶରୀରକୁ ଆବୃତ କରି ଅର୍ଥାତ୍ ଉପର ଦେଇ ବାମ ହସ୍ତରେ ପୁଚ୍ଛଟି (ଲାଞ୍ଜ) ରହିଥାଏ । ସୁଭଦ୍ରା ଦେବୀ ସାଧାରଣ ବେଶ ଧାରଣ କରିଥାନ୍ତି । ଶ୍ରୀବଳଭଦ୍ରଙ୍କ ଦୁଇ ପାର୍ଶ୍ୱରେ ଗୋଟିଏ ଲେଖାଏଁ ଗାଈ, ବାଛୁରୀ (କାଷ୍ଠ ନିର୍ମିତ) ଦଣ୍ଡାୟମାନ ଭଙ୍ଗୀରେ ରହିଥାନ୍ତି ।

# ପ୍ରଳମ୍ବାସୁର ବଧ ବେଶ

ଭାଦ୍ରବ ମାସ କୃଷ୍ଣ ପକ୍ଷ ଦ୍ୱାଦଶୀ ତିଥି ଦିନ ଶ୍ରୀମନ୍ଦିରରେ ଶ୍ରୀବଳଭଦ୍ର ଦେବଙ୍କର ପ୍ରଳମ୍ବାସୁର ବଧ ବେଶ ଅନୁଷ୍ଠିତ ହୋଇଥାଏ । ଉକ୍ତ ଦିନ ଶ୍ରୀଜୀଉମାନଙ୍କ ମଧ୍ୟାହ୍ନ ଧୂପ ସମାପ୍ତି ପରେ ଏହି ବେଶ ହୋଇଥାଏ ।

ପ୍ରଳମ୍ବାସୁର ଆଖ୍ୟାୟିକା ସଂପର୍କରେ ଶ୍ରୀମଦ୍ ଭାଗବତର ଦଶମ ସ୍କନ୍ଧରେ ବିସ୍ତୃତ ବର୍ଣନା ରହିଅଛି । ଉକ୍ତ ବର୍ଣନା ଅନୁଯାୟୀ ଯମୁନା ନଦୀ କୂଳରେ ଥିବା ପବିତ୍ର ବୃନ୍ଦାବନ ଭୂମି ଶ୍ରୀବଳରାମ ଓ ଶ୍ରୀକୃଷ୍ଣଙ୍କର ଗୋପାଳ ବାଳକ, ଗୋ ଓ ଗୋବତ୍ସାଙ୍କ ସହିତ ଏକତ୍ର କ୍ରୀଡ଼ା ଭୂମି । ସେହି କ୍ରୀଡ଼ା କାଳରେ ଏକ ଯୁଦ୍ଧକାଳୀନ ଅଭିନୟ ସେମାନଙ୍କର କ୍ରୀଡ଼ାର ବିଷୟବସ୍ତୁ ହୋଇଥିଲା । ଗୋପ ବାଳକଙ୍କ ସମେତ ଶ୍ରୀକୃଷ୍ଣ ଓ ବଳରାମଙ୍କର କ୍ରୀଡ଼ା ଦେଖି କଂସର ନିର୍ଦ୍ଦେଶ ମତେ ସେମାନଙ୍କୁ ମାରିବ ବୋଲି ମନେ ମନେ ଭାବି ପ୍ରଳମ୍ବାସୁର ଗୋପାଳ ବାଳକ ବେଶରେ ସେମାନଙ୍କ ସହିତ ଆସି ମିଶିଲା । ଏକଥା କିନ୍ତୁ ଶ୍ରୀକୃଷ୍ଣଙ୍କୁ ଅଜଣା ନଥିଲା । ସେ ଗୋପାଳ ବାଳକଙ୍କୁ ପ୍ରସ୍ତାବ ଦେଲେ ଯେ ରାଜା ପରଜା ନାମକ ଏକ ଖେଳ ଅଛି । 'ବର୍ତମାନ ଆମେମାନେ ସେହି ଖେଳ ଖେଳିବା ।' ଏକଥା ଶୁଣି ଗୋପାଳ ବାଳକମାନେ ଆନନ୍ଦ ମନରେ ଶ୍ରୀକୃଷ୍ଣ ଓ ବଳରାମଙ୍କୁ ରାଜା କରି ଅନ୍ୟ ସମସ୍ତ ଗୋପାଳ ବାଳକ ପ୍ରଜା ହେଲେ । ବଳରାମଙ୍କ ପଟେ ଅଧେ ଓ ଶ୍ରୀକୃଷ୍ଣଙ୍କ ପକ୍ଷରେ ଅଧେ ପ୍ରଜା ରହିଲେ । ଏହି ଯୁଦ୍ଧରେ ବଳ କଷାକଷିର କାର୍ଯ୍ୟ ରହିଲା । ବଳରାମ ଜଣ ଜଣଙ୍କୁ ନାମ ଧରି ଯୁଦ୍ଧ କରିବା ନିମନ୍ତେ ଡାକିଲେ । ଏହି ଯୁଦ୍ଧର ହାରଜିତ୍ ନିମନ୍ତେ ଏକ ଚୁକ୍ତି ରହିଲା । ଯେ ଯୁଦ୍ଧରେ ହାରିବ, ସେ ବିଜେତାଙ୍କୁ କାନ୍ଧରେ ବସାଇ 'ଭାଣ୍ଡୀର' ନାମକ ବଟବୃକ୍ଷ ତଳକୁ ବୋହି ନେବ । ଏଥିରେ ସମସ୍ତେ ରାଜି ହୁଅନ୍ତେ, ପରସ୍ପରରେ ଯୁଦ୍ଧ ହୋଇ ଏହି କ୍ରମରେ ଶ୍ରୀକୃଷ୍ଣ ଦାମ ନାମକ ଗୋପାଳ ବାଳକ ସହିତ ଯୁଦ୍ଧ କରି ଜିତିବାରୁ ଦାମ ତା'ର ସ୍କନ୍ଧରେ ଶ୍ରୀକୃଷ୍ଣଙ୍କୁ ବସାଇ ନେଇ ସେହି ନିର୍ଦ୍ଦିଷ୍ଟ ବଟବୃକ୍ଷ ତଳେ ଛାଡ଼ି ଦେଇଥିଲେ । ତତ୍ପରେ ଛଦ୍ମବେଶୀ ପ୍ରଳମ୍ବାସୁର ସହିତ ଶ୍ରୀବଳରାମଙ୍କର ଯୁଦ୍ଧ ହେଲା । ପ୍ରଳମ୍ବ ଜାଣି ଜାଣି ହାରି, ବଳରାମଙ୍କୁ ସ୍କନ୍ଧରେ ବହନ କରି ନିର୍ଦ୍ଦିଷ୍ଟ ଲକ୍ଷ୍ୟସ୍ଥଳକୁ ଯିବା ପରିବର୍ତେ ଦ୍ରୁତ ଗତିରେ ଆକାଶ ମାର୍ଗରେ ଗତି କଲାବେଳେ ବଳରାମ କଳା ମେଘରେ ବିଜୁଳି ସମ ଶୋଭା ପାଇଲେ । ପ୍ରଳମ୍ବର ଉଦ୍ଦେଶ୍ୟ ଥିଲା ବଳରାମ ଓ ଶ୍ରୀକୃଷ୍ଣଙ୍କୁ ବଧ କରି କଂସ ରାଜାଙ୍କଠାରୁ ପୁରସ୍କୃତ ହେବା । ପ୍ରଭୁ ବଳରାମ ମାୟାବୀ ଅସୁରକୁ ଚିହ୍ନି ତାହାର ମୁଣ୍ଡ ଉପରେ ବଜ୍ର ସମ ଏକ ମୁଷ୍ଟି ପ୍ରହାର କଲେ । ତାହାର ମୁଣ୍ଡ ଶତ ଖଣ୍ଡ ହେଲା ଓ ଗୋବର୍ଧନ ନିକଟରେ ତାହାର ମୃତ୍ୟୁ ଘଟିଲା । ସେହି ଘଟନାର ସ୍ମାରକୀକୁ ଅବଲମ୍ବନ କରି ଶ୍ରୀମନ୍ଦିରରେ ପ୍ରଳମ୍ବାସୁର ବଧ ବେଶ ଅନୁଷ୍ଠିତ ହୋଇ ଆସୁଅଛି ।

ପ୍ରଳମ୍ବାସୁର ବଧ ବେଶରେ ଶ୍ରୀଜଗନ୍ନାଥ ଓ ଶ୍ରୀସୁଭଦ୍ରା ସାଧାରଣ ବେଶରେ ବିରାଜମାନ କରନ୍ତି । କେବଳ ଶ୍ରୀବଳଭଦ୍ରଙ୍କୁ ପ୍ରଳମ୍ବାସୁର ବଧ ବେଶରେ ଭୂଷିତ କରାଯାଏ । ଏକ ବିରାଟକାୟ କାଷ୍ଠ ନିର୍ମିତ ପ୍ରଳମ୍ବାସୁର ମୂର୍ତି ରତ୍ନ ସିଂହାସନସ୍ଥ ବଳଭଦ୍ରଙ୍କ ନିମ୍ନ ଭାଗରେ ସଜାଯାଏ । ସେହି ଅସୁରର ସ୍କନ୍ଧ ଏବଂ ଦୁଇ ଭୁଜରେ ବଳଭଦ୍ର ବସିଥିବା ଭଳି ଦୃଶ୍ୟ ଏ ବେଶରୁ ସ୍ପଷ୍ଟ ହୁଏ । ଏହି ବେଶ ଦ୍ୱିପ୍ରହର ଧୂପ ପରେ ଅନୁଷ୍ଠିତ ହୋଇ ସନ୍ଧ୍ୟା ଧୂପ ସରିବା ଯାଏଁ ରହିଥାଏ ।

# କୃଷ୍ଣ ବଳରାମ ବେଶ

ଭାଦ୍ରବ ମାସ କୃଷ୍ଣପକ୍ଷ ତ୍ରୟୋଦଶୀ ତିଥିରେ କୃଷ୍ଣ ବଳରାମ ବେଶ ଅନୁଷ୍ଠିତ ହୁଏ । ଏହି ବେଶରେ ଜଗନ୍ନାଥଙ୍କୁ କୃଷ୍ଣ ଭାବରେ ଓ ବଳଭଦ୍ରଙ୍କୁ ବଳରାମ ଭାବରେ ସୁସଜ୍ଜିତ କରାଯାଏ । ସୁଭଦ୍ରା ଚତୁର୍ଭୁଜ ଧାରଣ କରି ଭିନ୍ନ ଭିନ୍ନ ଆୟୁଧ ସହ ପଦ୍ମାସନରେ ଉପବେଶନ କରନ୍ତି । ଉଭୟ କୃଷ୍ଣ (ଜଗନ୍ନାଥ) ଏବଂ ବଳରାମ (ବଳଭଦ୍ର) କାଷ୍ଠ ନିର୍ମିତ ଦୁଇ ଗୋଡ଼ ଛନ୍ଦି ଛନ୍ଦପୟର ମୁଦ୍ରାରେ ରହିଥା'ନ୍ତି । ଜଗନ୍ନାଥଙ୍କର ଗୋଟିଏ ହାତରେ ସୁବର୍ଣ ବଂଶୀ ଓ ଅନ୍ୟ ହସ୍ତରେ ପଦ୍ମ ଥାଏ । ବଳରାମଙ୍କ ଡାହାଣ ହାତରେ ଶିଙ୍ଗା ଓ ବାମ ହସ୍ତରେ ପଦ୍ମ ଥାଏ । କିରୀଟ ଉପରେ ସୋଲରେ ନିର୍ମିତ ସପ୍ତଫେଣିଆ ସର୍ପ ବିରାଜମାନ କରିଥାଏ । ହସ୍ତ ମଧ୍ୟ କାଠରେ ତିଆରି ହୋଇଥାଏ । ଏହି ବେଶରେ ଜଗନ୍ନାଥ ଓ ବଳଭଦ୍ର ଗୋଟିଏ ଗୋଟିଏ ପାଗ ପିନ୍ଧିଥା'ନ୍ତି । ସେହି ପାଗଦ୍ୱୟ କିରୀଟଯୁକ୍ତ ହୋଇଥାଏ । ରତ୍ନସିଂହାସନ ଉପରେ ଖଞ୍ଜାଯାଇଥିବା ଏକ କ୍ଷୁଦ୍ରକାଷ୍ଠ ନିର୍ମିତ ତଥା ଜରି ଜମ୍ଭୁରାରେ ଆଚ୍ଛାଦିତ ସିଂହାସନରେ ଚକାମୁଣ୍ଡି ପକାଇ ପ୍ରଭୁ (ପଦ୍ମାସନରେ) ଉପବେଶନ କରନ୍ତି । ବାଙ୍କଚୂଳ କିରୀଟ ଉପରେ ପତ୍ରଲଗା କଦମ୍ବ ଫୁଲ ଶୋଭାପାଏ । ଶ୍ରୀପୟର, ପାଉଜି, ବାଙ୍କି, ପାହୁଡ଼, ଗୋଡ଼ମୁଦି, ମଲ୍ଲିକଡ଼, ଚନ୍ଦ୍ର, ଚିତା, ନାକଚଣା, ହାତପଫେର, ଖଡୁ ଇତ୍ୟାଦିରେ ସାରା ଶରୀର ଶୋଭା ପାଇଥାଏ । ସୁଭଦ୍ରାଙ୍କ ମସ୍ତକରେ ମଧ୍ୟ ଏକ କିରୀଟ ଶୋଭାପାଏ । ସବୁ ଠାକୁରଙ୍କ କିରୀଟରେ କଦମ୍ବ ଫୁଲ ଆଉ ପତ୍ର ବହୁ ପରିମାଣରେ ଲାଗିଥାଏ । ବଳଭଦ୍ର ଓ ଜଗନ୍ନାଥଙ୍କ ଦୁଇ ପାର୍ଶ୍ୱରେ ନନ୍ଦ, ଉପନନ୍ଦ, ବସୁଦେବ, ଗୋପାଳ ବାଳକମାନେ ଗୋପୀ, ବ୍ରହ୍ମା, ସହସ୍ର ଚକ୍ଷୁ ଇନ୍ଦ୍ର, ନାରଦ, ରୋହିଣୀ, ଯଶୋଦାଙ୍କୁ ଦଣ୍ଡାୟମାନ ଭଙ୍ଗୀରେ ରଖାଯାଏ । ଠାକୁରଙ୍କ ଆଗରେ ଚାରିଗୋଟି ଗାଈ ଦଣ୍ଡାୟମାନ ଭଙ୍ଗୀରେ ଠିଆ ହୋଇଥା'ନ୍ତି । କୃଷ୍ଣ ବଳରାମ ବେଶ ଦ୍ୱିପହର ଧୂପ ପରେ ଆରମ୍ଭ ହୋଇ ସନ୍ଧ୍ୟାଧୂପ ପର୍ଯ୍ୟନ୍ତ ରହେ । ଏହି ବେଶରେ ଖିରି ଓ ଅମାଲୁ ଭୋଗ ଲାଗେ ।

ଏହି ବେଶ ବିଂଶ ଶତାବ୍ଦୀର ମଧ୍ୟଭାଗରେ ଖଣ୍ଡସାହିର ଜମିଦାରଙ୍କ ଦ୍ୱାରା କରାଯାଇଛି ବୋଲି ଶ୍ରୀମନ୍ଦିର ସତ୍ତ୍ୱଲିପିରୁ ସୂଚିତ ହୁଏ । ଏହି ବେଶ ଅନୁଷ୍ଠିତ ହେବା ପୂର୍ବରୁ କୁଶଳୀ କାରିଗରମାନଙ୍କ ଦ୍ୱାରା ବେଶ ସାମଗ୍ରୀର ମରାମତି କାର୍ଯ୍ୟ ଶ୍ରୀମନ୍ଦିର ପରିସରରେ କରାଯାଏ ।

ରତ୍ନ ସିଂହାସନସ୍ଥ ଶ୍ରୀଜୀଉମାନଙ୍କର କୃଷ୍ଣ ବଳରାମ ବେଶ ଏକ ଆକର୍ଷଣୀୟ ତଥା ମନୋରମ ବେଶ । ଉକ୍ତ ବେଶରେ ଜଗନ୍ନାଥଙ୍କର ୨ ହସ୍ତ, ବଳଭଦ୍ରଙ୍କ ୨ ହସ୍ତ ଓ ସୁଭଦ୍ରାଙ୍କର ୪ ହସ୍ତ ହୋଇଥାଏ । ସୁଭଦ୍ରା ରତ୍ନ ସିଂହାସନ ଉପରେ ଖଞ୍ଜା ଯାଇଥିବା ଏକ କ୍ଷୁଦ୍ର କାଷ୍ଠ ନିର୍ମିତ ତଥା ଜରି ଜମ୍ଭୁରାରେ ଆଚ୍ଛାଦିତ ସିଂହାସନ ଉପରେ ଉପବେଶନ (ଚକାମୁଣ୍ଡି ପକାଇ) ଭଙ୍ଗୀରେ ବସିଥାନ୍ତି ।

କୃଷ୍ଣ ବଳରାମ ବେଶ ଥାଇ ଠାକୁରମାନଙ୍କର ସନ୍ଧ୍ୟାଧୂପ ଅନୁଷ୍ଠିତ ହୁଏ । ତତ୍‌ପରେ ସାହାଣମେଲା ବା ସର୍ବସାଧାରଣ ଦର୍ଶନ ହୋଇଥାଏ । ପୂର୍ବେ ଏହି ଭାଦ୍ରବ କୃଷ୍ଣ ତ୍ରୟୋଦଶୀ ତିଥିରେ ଶ୍ରୀଜଗନ୍ନାଥଙ୍କର ଗିରିଗୋବର୍ଦ୍ଧନ ବେଶ ହେଉଥିଲା । ୧୯୪୭ ମସିହା ପରେ ଗିରିଗୋବର୍ଦ୍ଧନ ପରିବର୍ତ୍ତେ କୃଷ୍ଣ-ବଳରାମ ବେଶ ଅନୁଷ୍ଠିତ ହେଉଅଛି ।

# ରାଧା ଦାମୋଦର ବେଶ

ପ୍ରତିବର୍ଷ ଶ୍ରୀଜଗନ୍ନାଥ ମନ୍ଦିରରେ ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ପ୍ରତ୍ୟହ ଶ୍ରୀଜୀଉମାନଙ୍କର ପବିତ୍ର 'ରାଧା ଦାମୋଦର' ବେଶ ଅନୁଷ୍ଠିତ ହୋଇଥାଏ । ପୌରାଣିକ ମତାନୁଯାୟୀ ଅକ୍ରୂର ମଥୁରାକୁ ଯିବା ସମୟରେ ଯମୁନା ନଦୀରେ ସ୍ନାନ କରୁଥିବା ବେଳେ ଜଳ ମଧ୍ୟରେ ଏହି 'ରାଧା ଦାମୋଦର' ବେଶ ଦର୍ଶନ କରିଥିଲେ । ଉଲ୍ଲେଖଯୋଗ୍ୟ ଯେ ଏହି ମନୋରମ ବେଶ କାର୍ତ୍ତିକ ମାସରେ ଦୀର୍ଘ ଏକମାସ ଧରି ହୋଇଥାଏ । ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରୁ ଏହି ବେଶର ପ୍ରଚଳନ ହୋଇଅଛି । ଅପରପକ୍ଷରେ ପୁରୀ ଶ୍ରୀମନ୍ଦିରରେ ଏହି ବେଶର ପ୍ରଚଳନ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରୁ ଅର୍ଥାତ୍ ଶ୍ରୀଚୈତନ୍ୟଙ୍କ ପୁରୀ ଆଗମନ ସମୟରେ ହିଁ ହୋଇଥିବା ଅନୁମାନ କରାଯାଏ । କାରଣ ଶ୍ରୀଚୈତନ୍ୟ ଦେବଙ୍କ ମତରେ ଶ୍ରୀରାଧା ଓ ଶ୍ରୀକୃଷ୍ଣଙ୍କ ମିଳିତ ତନୁ ହେଉଛନ୍ତି ନିଜେ ଶ୍ରୀଜଗନ୍ନାଥ । ରାଧା ଦାମୋଦର ବେଶରେ ଏହି ଭାବ ହିଁ ପ୍ରକଟିତ ହୋଇଥାଏ । ଶ୍ରୀମନ୍ଦିରରେ ଶ୍ରୀକୃଷ୍ଣଲୀଳା ସମ୍ବନ୍ଧୀୟ ନୀତି, ଉତ୍ସବ ଓ ବେଶ ଇତ୍ୟାଦି ଗଜପତି ପ୍ରତାପରୁଦ୍ର ଦେବଙ୍କ ସମୟରେ ପ୍ରଚଳନ ହୋଇଥିବା ବିଷୟ ଅନେକ ଗବେଷକ ମତପ୍ରକାଶ କରିଥାନ୍ତି ।

ଶ୍ରୀମନ୍ଦିର ସ୍ୱତ୍ୱଲିପିର ଦ୍ୱାଦଶ ଯାତ୍ରା ଓ ଅନ୍ୟାନ୍ୟ ପର୍ବପର୍ବାଣି ତାଲିକାରେ ବର୍ଣ୍ଣିତ ଅଛି ଯେ "ଶ୍ରୀମନ୍ଦିରରେ ଆଶ୍ୱିନ ଶୁକ୍ଳ ଏକାଦଶୀ ଦିନଠାରୁ କାର୍ତ୍ତିକ ମାସ ନୀତି, ବେଶ, ଭୋଗ ଓ ବ୍ରତ ଆରମ୍ଭ ହୁଏ । ରାତ୍ର ଦୁଇଘଡ଼ି ଥାଉଣୁ ଆଳତି ଅବକାଶ ବଢ଼ି (ଶେଷ ପରେ) ରାଧା ଦାମୋଦର ବେଶ ହୋଇ ଗୋପାଳବଲ୍ଲଭ ଉଠିବ । ସକାଳ ଧୂପ ସରିବା ପରେ ପାଣି ପଡ଼ି ବାଲଧୂପ ଛେକ ଆସିଲା ପରେ ମୁଦିରସ୍ତ ଶ୍ରୀଅଙ୍ଗରେ ପ୍ରସାଦ ଲାଗି କରିବେ । ବାଲଧୂପ ସରିବା ପରେ ୩ ବାଢ଼େ ବନ୍ଦାପନା ହୁଏ ।

ଦଶହରା ପରଦିନ (ଆଶ୍ୱିନ ଶୁକ୍ଳ) ଏକାଦଶୀଠାରୁ ହେଉଥିବା ରାଧା ଦାମୋଦର ବେଶ କାର୍ତ୍ତିକ ଶୁକ୍ଳ ଦଶମୀଯାଏ ଚାଲିବ । ଅମାବାସ୍ୟା ପରଠାରୁ ପୂର୍ଣ୍ଣିମା ଯାଏ ସୋମବାର ଦିନ ବଡ଼ ବାଡ଼ରେ (ବଳଭଦ୍ରଙ୍କ) ହରିହର ବେଶ ହେବ । ଅର୍ଦ୍ଧେକ କଳା ଓ ଅର୍ଦ୍ଧେକ ଧଳା ବସ୍ତ୍ରରେ ଆବୃତ୍ତ ହୋଇଥାଏ ।

କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନଠାରୁ ଅର୍ଥାତ୍ ଏହିଦିନ ଠାକୁରମାନେ ଲକ୍ଷ୍ମୀ ନାରାୟଣ ବେଶ ହୁଅନ୍ତି । ଦ୍ୱାଦଶୀ ଦିନ ବାମନ ବା ବାଙ୍କଚୂଡ଼ା ବେଶ, ତ୍ରୟୋଦଶୀରେ ତ୍ରିବିକ୍ରମ ବା ଡାଳକିଆ, ଚତୁର୍ଦ୍ଦଶୀରେ ଲକ୍ଷ୍ମୀନୃସିଂହ ଓ ପୂର୍ଣ୍ଣିମା ଦିନ ରାଜବେଶ ହୁଅନ୍ତି । ବାଲଧୂପ ପୂର୍ଣ୍ଣିମାଯାଏ ହୁଏ ।"

ରାଧା ଦାମୋଦର ବେଶରେ ପ୍ରଭୁ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର ତ୍ରିକଚ୍ଛ ପରିଧାନ କରିଥିବେ । ହସ୍ତରେ ଲାଗିହୁଏ ସୁବର୍ଣ୍ଣ ନଳୀଭୁଜ, ବାଉଁଶ ପାତିଆ ଓ କନାରେ ନିର୍ମିତ ଚୂଳ ତ୍ରିମୁଣ୍ଡି ଉପରେ ରହିଥାଏ ଏବଂ ଚୂଳର ଅଗ୍ରଭାଗରେ ଚନ୍ଦ୍ରିକା ଶୋଭାପାଏ । କର୍ଣ୍ଣ ଦେଶରେ କୁଣ୍ଡଳ, କଟି ତଟରେ ଶୋଭାବିସ୍ତାର କରେ ଓଡ଼ିଆଣୀ, ମସ୍ତକରେ ତଡ଼ଗି, ଚନ୍ଦ୍ର, ସୂର୍ଯ୍ୟ ଏବଂ ଚିତା ଇତ୍ୟାଦି ସ୍ୱର୍ଣ୍ଣ ଅଳଙ୍କାରରେ ଭୂଷିତ ହୋଇଥାନ୍ତି । ଏତଦ୍ ବ୍ୟତୀତ ବିଭିନ୍ନ ପୁଷ୍ପ ଅଳଙ୍କାର, ବାରଲାଗି ପାଟଶାଢ଼ି, ଫୁଟା, ଶିରୀକାପଡ଼ା, ପହରଣ, ବଳା, ଅଧରବଳା ଓ ଉତ୍ତରୀୟ ବସ୍ତ୍ର ପରିଧାନ କରିଥାନ୍ତି ।

# ଲକ୍ଷ୍ମୀ ନାରାୟଣ (ଠିଆକିଆ) ବେଶ

କାର୍ତ୍ତିକ ଶୁକ୍ଳ ଏକାଦଶୀ ତିଥିରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଲକ୍ଷ୍ମୀ ନାରାୟଣ ବେଶ ଅନୁଷ୍ଠିତ ହୋଇଥାଏ । ଶ୍ରୀଜଗନ୍ନାଥଙ୍କର ଅନ୍ୟ ସବୁ ବେଶ ପରି ଲକ୍ଷ୍ମୀ ନାରାୟଣ ବେଶ ମଧ୍ୟ ଖୁବ୍ ସୁନ୍ଦର । ଶ୍ରୀଜଗନ୍ନାଥ ଧର୍ମ ଓ ବିଭିନ୍ନ ସଂପ୍ରଦାୟର ଦେବତା ଭାବରେ ପରିଗଣିତ ହେଲେ ହେଁ ମୁଖ୍ୟତଃ ବିଷ୍ଣୁ ରୂପରେ ସେ ଆରାଧିତ । କଥିତ ଅଛି ରାମାନୁଜାଚାର୍ଯ୍ୟ ଏହି ବେଶ ସଂଦର୍ଶନ କରି ପରମ ସନ୍ତୋଷ ଲାଭ କରିବା ସଂଗେ ସଂଗେ ଉକ୍ତ ଦିନ ଶ୍ରୀ ସମ୍ପ୍ରଦାୟର ମହୋତ୍ସବ କରାଇଥିଲେ । ତେଣୁ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରୁ ଏହି ବେଶର ପ୍ରଚଳନ ହୋଇଥିବାର ଅନୁମାନ କରଯାଏ ।

କାର୍ତ୍ତିକ ଶୁକ୍ଳ ଏକାଦଶୀ ଦିନ ଶ୍ରୀବିଗ୍ରହମାନଙ୍କର ଅବକାଶ ନୀତି ଶେଷ ହେବା ପରେ ''ଲକ୍ଷ୍ମୀ ନାରାୟଣ'' ବା ''ଠିଆକିଆ'' ବେଶ ହୋଇଥାଏ । ଉପରୋକ୍ତ ବେଶ ଥାଇ ଠାକୁରମାନଙ୍କ ଗୋପାଳବଲ୍ଲଭ, ସକାଳ ଧୂପ, ବାଳଧୂପ, ଭୋପ ମଣ୍ଡପ ଇତ୍ୟାଦି ନୀତି ହୋଇଥାଏ ।

ସ୍ୱର୍ଣ୍ଣ ଅଳଙ୍କାର, ପୁଷ୍ପମାଲ୍ୟ, ପାଟ ବସ୍ତ୍ର ଇତ୍ୟାଦିରେ ପୁଷ୍ପାଳକ ସେବକମାନେ ତିନି ଠାକୁରଙ୍କୁ ଲକ୍ଷ୍ମୀ ନାରାୟଣ ବେଶରେ ଭୂଷିତ କରିଥାନ୍ତି । ଉଲ୍ଲେଖଯୋଗ୍ୟ ଯେ ଏହି ମାସରେ ଶ୍ରୀମନ୍ଦିରରେ ଅନୁଷ୍ଠିତ ରାଧା ଦାମୋଦର ବେଶରେ ଠାକୁରମାନେ ଶ୍ରୀହସ୍ତରେ ନଳୀଭୁଜ ଧାରଣ କରୁଥିବାବେଳେ ଲକ୍ଷ୍ମୀ ନାରାୟଣ ବେଶରେ ଶ୍ରୀଭୁଜ ଓ ଶଙ୍ଖ, ଚକ୍ର, ହଳ, ମୁଷଳ ଓ କେତେକ ଅଧିକ ସ୍ୱର୍ଣ୍ଣ ଅଳଙ୍କାର ଧାରଣ କରିଥାନ୍ତି । ସୁଭଦ୍ରାଙ୍କ ବେଶରେ କିଛି ପରିବର୍ତ୍ତନ ହୁଏ ନାହିଁ । ଏତଦ୍ ବ୍ୟତୀତ ସୁନା ବେଶ ଭଳି ଏହି ବେଶରେ ଠାକୁରମାନଙ୍କ ମସ୍ତକରେ ସ୍ୱର୍ଣ୍ଣ କିରୀଟ ଶୋଭା ପାଇଥାଏ ଓ କିରୀଟ ପଛ ପାର୍ଶ୍ୱରେ ସୁବର୍ଣ୍ଣ କିଆ ଖଞ୍ଜା ଯାଇଥାଏ । ତେବେ ରାଜବେଶରେ ତିନିଗୋଟି ସୁନା କିରୀଟ ଲାଗି ହୁଅନ୍ତି ।

ଏହି ବେଶ ସ୍ନାନ ରୀତି ପରେ ଆରମ୍ଭ ହୁଏ ଏବଂ ଏହା ବାଳଧୂପ ପର୍ଯ୍ୟନ୍ତ ରହେ । କାର୍ତ୍ତିକ ମାସରେ ବାଳଧୂପ କରାଯାଏ । କ୍ରମ ଅନୁସାରେ ଯେଉଁ ଧୂପ କାର୍ତ୍ତିକ ମାସରେ ହୁଏ ସେହି ଧୂପର ନାମ ହେଲା- (ଗୋପାଳ ବଲ୍ଲଭ ଭୋଗ, ସକାଳ ଧୂପ, ବାଳଭୋଗ, ଛତ୍ରଭୋଗ, ଦ୍ୱିପ୍ରହର ଧୂପ, ସନ୍ଧ୍ୟାଧୂପ ଓ ବଡ଼ସିଂହାର ଧୂପ) ।

ଏହି ବେଶର ଅନ୍ୟ ନାମ ହେଲା ଠିଆକିଆ ବେଶ । ମସ୍ତକରେ ସୁବର୍ଣ୍ଣ କିଆ ଠିଆ ଭାବରେ ଲାଗି ହେଉଥିବାରୁ ଏହି ବେଶର ନାମକରଣ ଏପରି କରାଯାଇଛି ।



ଲକ୍ଷ୍ମୀ ନାରାୟଣ (ଠିଆକିଆ) ବେଶ

# ବାଙ୍କଚୂଡ଼ା ବେଶ

କାର୍ତ୍ତିକ ମାସର ପଞ୍ଚୁକ ମଧ୍ୟରେ ପଡୁଥିବା ଶୁକ୍ଳ ଦ୍ୱାଦଶୀ ତିଥିରେ ରତ୍ନ ସିଂହାସନାଧିଷ୍ଠିତ ମହାପ୍ରଭୁମାନଙ୍କ ବାଙ୍କଚୂଡ଼ା ବେଶ ଅନୁଷ୍ଠିତ ହୋଇଥାଏ। ଉକ୍ତ ଦିନ ଅବକାଶ ନୀତି ଶେଷ ହେବା ପରେ ପାଳିଆ ମେକାପ, ଖୁଣ୍ଟିଆ, ଚାଙ୍ଗଡ଼ା ମେକାପ ଓ ପ୍ରାୟ ୫ ଜଣ ପୁଷ୍ପାଳକ ଶ୍ରୀ ବିଗ୍ରହମାନଙ୍କୁ ବାଙ୍କଚୂଡ଼ା ବେଶରେ ସଜ୍ଜିତ କରିଥାନ୍ତି।

ଯେତେବେଳେ ଭଗବାନ ଶ୍ରୀକୃଷ୍ଣଙ୍କୁ ଭକ୍ତ ଅକ୍ରୁର ମଥୁରା ନେବା ପାଇଁ ଗୋପ ଆସିଥିଲେ, ଏହି ବେଶରେ ପ୍ରଭୁଙ୍କୁ ଦର୍ଶନ କରିଥିଲେ। ସେହି ସ୍ମୃତିକୁ ଉଜ୍ଜୀବିତ କରିବା ପାଇଁ ପୁରୀ ଶ୍ରୀମନ୍ଦିରରେ ବହୁ ପୁରାତନ କାଳରୁ ବାଙ୍କଚୂଡ଼ା ବେଶ ପାଳିତ ହୋଇଆସୁଅଛି। ବାଙ୍କଚୂଡ଼ା ବେଶର ବିଶେଷତ୍ୱ ଏହିକି ଯେ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କ ଶ୍ରୀମସ୍ତକରେ ଚନ୍ଦ୍ରିକା ଚୂଳ ସହିତ ଦକ୍ଷିଣ ଦିଗକୁ ଆଡ଼ ଖୋସା ପଡ଼େ ଏବଂ ଏହି ଖୋସାର (ବେଣୀ) ଅଗ୍ର ଗଣ୍ଠିରେ ଏକ ସୁବର୍ଣ୍ଣ କିଆ ଖଞ୍ଜା ଯାଇଥାଏ। ଏଠାରେ ସୂଚନାଯୋଗ୍ୟ ଯେ ଏକ ଛୋଟ ସ୍ୱର୍ଣ୍ଣ କିରୀଟ ମହାପ୍ରଭୁମାନଙ୍କ କପାଳର ଶୀର୍ଷ ଭାଗରେ ଶୋଭା ପାଇଥାଏ। ଏହି ବେଶରେ ଠାକୁରମାନେ ଅବିକଳ ବାମନବେଶୀ ପରି ଶୋଭା ପାଇଥାନ୍ତି। ଲକ୍ଷ୍ମୀ ନାରାୟଣ ବେଶରେ ଲାଗୁଥିବା ଅଧିକାଂଶ ଅଳଙ୍କାର ଏଥିରେ ବ୍ୟବହୃତ ହୋଇଥାଏ। ଏହି ବେଶରେ ମଧ୍ୟ ଜଗନ୍ନାଥ ଓ ବଳଭଦ୍ର ସୁବର୍ଣ୍ଣ ହସ୍ତ ପଦଯୁକ୍ତ ହୋଇଥା'ନ୍ତି। ଜଗନ୍ନାଥ ଚକ୍ର ଓ ଶଙ୍ଖ ଏବଂ ବଳଭଦ୍ର ହଳ ମୁଷଳ ଧାରଣ କରନ୍ତି। ଏହି ବେଶରେ ସୁଭଦ୍ରାଙ୍କର ଆଭୂଷଣ ପରିବର୍ତ୍ତନ ହୁଏ ନାହିଁ। ମାତ୍ର ତାଙ୍କର ମସ୍ତକ ସୁବର୍ଣ୍ଣ କିଆରେ ଶୋଭିତ ହୁଏ। ଲକ୍ଷ୍ମୀନାରାୟଣ ବେଶରେ ଲାଗୁଥିବା ଅଧିକାଂଶ ଅଳଙ୍କାର ଏଥିରେ ଲାଗିହୁଏ।

ଏହି ବେଶ ସ୍ନାନ ପରେ ଆରମ୍ଭ ହୋଇ ବାଳଧୂପ ସମାପ୍ତ ହେବା ପର୍ଯ୍ୟନ୍ତ ରହେ। ଉକ୍ତ ଦିନ ଅବକାଶ ନୀତି ଶେଷ ହେବାପରେ ପାଳିଆ ମେକାପ, ଖୁଣ୍ଟିଆ, ଚାଙ୍ଗଡ଼ା ମେକାପ ଓ ପ୍ରାୟ ପାଞ୍ଚ ଜଣ ପୁଷ୍ପାଳକ ଶ୍ରୀବିଗ୍ରହଙ୍କୁ ବାଙ୍କଚୂଡ଼ା ବେଶରେ ସୁସଜ୍ଜିତ କରିଥା'ନ୍ତି। ଏହି ବେଶ କାର୍ଯ୍ୟ ପାଇଁ ପ୍ରାୟ ଦୁଇ ଘଣ୍ଟାରୁ ତିନି ଘଣ୍ଟା ସମୟ ଲାଗେ। ଭୋଗମଣ୍ଡପ ଶେଷ ହେବାପରେ ଏହି ବେଶ ଦର୍ଶନ ନିମନ୍ତେ ସାହାଣମେଲା କରାଯାଏ।

ବାଙ୍କଚୂଡ଼ା ବେଶ ଏକ କୃଷ୍ଣ ସଂପର୍କିତ ବେଶ। କବି ବନମାଳୀ ତାଙ୍କ ପଦ୍ୟାବଳୀରେ ଲେଖିଛନ୍ତି-

ନିରେଖି ଚାହାଁରେ ସଖୀ ! ଏ କଦମ୍ବ ମୂଳକୁ
ସଂସାର ସାର ସୁଷମା ହୋଇବ କି କୂଳକୁ।
ଶିରେ ବାଙ୍କଚୂଳ ଶିଖୀ ପୁଚ୍ଛ ଚଳାଚଳକୁ
ବିଲୋକିଲେ ସତୀଧୃତ ରହିବ କି କାଳକୁ।

# ଆଡକିଆ (ତ୍ରିବିକ୍ରମ) ବେଶ

ପ୍ରତିବର୍ଷ କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ ତିଥିରେ ମହାପ୍ରଭୁଙ୍କ ଆଡକିଆ ବା ତ୍ରିବିକ୍ରମ ବେଶ ଅନୁଷ୍ଠିତ ହୋଇଥାଏ। ଉକ୍ତ ଦିନ ପ୍ରାତଃ ସମୟରେ ଠାକୁରମାନଙ୍କ ଅବକାଶ ନୀତି ସମାପନ ହେବା ପରେ ଏହି ବେଶ ଆରମ୍ଭ ହୋଇଥାଏ। ପୁଷ୍ପାଳକ ସେବକମାନେ ଏହି ବେଶ ସମ୍ପାଦନ କରିଥାନ୍ତି।

ଆଡକିଆ ବେଶରେ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କ ମସ୍ତକରେ ଚୂଳ ଲଗାଯାଏ। ଚୂଳ ଦୁଇଟି ସୋଲ, କନା, ବେତ, ଜମ୍ବୁରା, କଇଁଥ ଅଠା ଇତ୍ୟାଦିରେ ନିର୍ମିତ ହୋଇଥାଏ। ଏହି ଚୂଳରେ ସ୍ୱର୍ଣ୍ଣ ନିର୍ମିତ କିଆ ଆଡବାଗରେ ଖୋସା ଯାଇଥାଏ। ଶ୍ରୀସୁଭଦ୍ରା ଓ ଅନ୍ୟ ଦୁଇ ଠାକୁରଙ୍କ ମସ୍ତକର ଶୀର୍ଷ ଭାଗରେ ସ୍ୱର୍ଣ୍ଣ ଚନ୍ଦ୍ରିକା ମଧ୍ୟ ଖଞ୍ଜା ଯାଇଥାଏ। ଏଥି ସହିତ ପୂର୍ବ ଦିନ ପରି ଅନ୍ୟାନ୍ୟ ସ୍ୱର୍ଣ୍ଣ ଅଳଙ୍କାର ଓ ହଳ, ମୂଷଳ, ଶଙ୍ଖ, ଚକ୍ର ଏବଂ ପାଟ ବସ୍ତ୍ର ଇତ୍ୟାଦିରେ ଠାକୁରମାନଙ୍କୁ ଆଡକିଆ ବା ତ୍ରିବିକ୍ରମ ବେଶରେ ଭୂଷିତ କରାଯାଇଥାଏ।

କଥିତ ଅଛି ତ୍ରିବିକ୍ରମ ବା ଆଡକିଆ ବେଶ ଅତିବଡ଼ୀ ସଂପ୍ରଦାୟର ଅତ୍ୟନ୍ତ ପ୍ରିୟ ଅଟେ। ପଞ୍ଚସଖାବାଦୀ ତଥା ଅତିବଡ଼ୀ ସଂପ୍ରଦାୟର ବହୁ ସଂଖ୍ୟକ ଶିଷ୍ୟ - ଭକ୍ତ ତଥା ମହନ୍ତମାନେ ଏହି ମନୋରମ ବେଶ ଦର୍ଶନ କରି ନିଜକୁ ସୌଭାଗ୍ୟ ମଣିଥାନ୍ତି। ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ଏହି ବେଶର ସମସ୍ତ ଆୟୋଜନ କରାଯାଇଥାଏ।

ଆଡ଼କିଆ ଓ ଠିଆକିଆ ବେଶ ମଧ୍ୟରେ ପ୍ରଭେଦ ଏହି ଯେ, ଠିଆକିଆ ବେଶରେ ସୁନା କିଆ ଲମ୍ବ ଭାବରେ ଖୋସାଯାଇଥିବା ବେଳେ ଆଡ଼କିଆ ବେଶରେ ତାହା ଲମ୍ବ ଭାବରେ ଖୋସା ନଯାଇ ଆଡ଼ବାଗରେ ଖୋସା ଯାଏ ଏବଂ ତାଳିକିଆ ବେଶରେ ସୋଲର ତାଳପତ୍ରରେ ସୁନାର କିଆପତ୍ର ଖଞ୍ଜାଯାଏ। ଏହି ସୁନାକିଆଗୁଡ଼ିକ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରଙ୍କ ମସ୍ତକରେ ପିନ୍ଧାଯାଇଥିବା ସୋଲ, କନା, ବେତ, ଜମ୍ବୁରା, କଇଁଥ ଅଠାରେ ନିର୍ମିତ ଚୂଳରେ ଖୋସାଯାଏ। ଚୂଳର ଶେଷରେ ଲଗାଯାଏ ସୁନାର ଚନ୍ଦ୍ରିକା। ସୁଭଦ୍ରାଙ୍କୁ ମଧ୍ୟ ଏହି ବେଶରେ ଗୋଟିଏ ସୁନା ଚନ୍ଦ୍ରିକା ଦ୍ୱାରା ଶୋଭିତ କରାଯାଏ। ମାତ୍ର ତାଙ୍କ ମସ୍ତକରେ ଚୂଳ ଲାଗି କରା ନଯାଇ ସୁନା କିରୀଟ ଲଗାଯାଏ। ସବୁ ଠାକୁରମାନଙ୍କର ମୁଖର ଉପର ପାର୍ଶ୍ୱରେ ଦୁଇଟି ଲେଖାଏଁ ଆଡ଼କାନି ଲଗାଯାଇଥାଏ। ଏହି ବେଶରେ ଘାଗଡ଼ା ମାଳି, ବରକୋଳି ମାଳି, ପଦ୍ମମାଳି, ଗିନିମାଳି, ପଦକ ମାଳି ପିନ୍ଧାଯାଏ। ଏହା ବ୍ୟତୀତ ମହାପ୍ରଭୁଙ୍କ ଅନ୍ୟାନ୍ୟ ଅଳଙ୍କାର, ମାଳି, ଶ୍ରୀପୟର, ଶ୍ରୀହସ୍ତ ଏବଂ ଆୟୁଧ ମଧ୍ୟ ଲାଗି କରାଯାଏ। ଜଗନ୍ନାଥ ବଳଭଦ୍ରଙ୍କୁ ଲୁଗା କଛା ମାରି ପିନ୍ଧାଇ ଦିଆଯାଏ। ଉକ୍ତ ଦିନ ପ୍ରାତଃ ସମୟରେ ଠାକୁରମାନଙ୍କ ଅବକାଶ ନୀତି ସମାପନ ପରେ ଏହି ବେଶ ଆରମ୍ଭ ହୁଏ। ଏହି ବେଶ ମଧ୍ୟ ତ୍ରିବିକ୍ରମ ବେଶ ନାମରେ ନାମିତ। ଶ୍ରୀମଦ୍ ଭାଗବତ୍ ପୁରାଣ ଓ ହରିବଂଶରେ ବାମନଙ୍କର ବର୍ଣ୍ଣନା ରହିଛି। ସେ ଦୁଇଟି ପାଦ ଦ୍ୱାରା ସ୍ୱର୍ଗ ମର୍ତ୍ତ୍ୟକୁ ବଳିଠାରୁ ନେବା ପରେ ତୃତୀୟ ପାଦ ତାଙ୍କର ନାଭି ପାଖରୁ କାଢ଼ିଥିଲେ ଏବଂ ଏହି ପାଦକୁ ସେ ବଳିର ମସ୍ତକରେ ରଖି ତାକୁ ପାତାଳକୁ ଚାପି ଦେଇଥିଲେ।

ମହାପ୍ରଭୁଙ୍କୁ ବାମନ ଭାବରେ ଦର୍ଶାଯାଇଛି। ଆଷାଢ଼ ମାସରେ ବିଷ୍ଣୁଙ୍କର ନାମ ବାମନ। ବାମନଙ୍କର ସେହି ସର୍ବମୟ ସ୍ୱରୂପକୁ ମନେ ପକାଯାଇ କାର୍ତ୍ତିକ ମାସର ତ୍ରୟୋଦଶୀ ତିଥିରେ ମହାପ୍ରଭୁଙ୍କର ତ୍ରିବିକ୍ରମ ବେଶ କରାଯାଏ। ଏହି ବେଶ ଅତିବଡ଼ୀ ସଂପ୍ରଦାୟ (ଭାଗବତର ରଚୟିତା ଜଗନ୍ନାଥ ଦାସଙ୍କର) ଅତିପ୍ରିୟ ବେଶ।

# ଡାଳିକିଆ (ଲକ୍ଷ୍ମୀନୃସିଂହ) ବେଶ

କାର୍ତ୍ତିକ ମାସ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ ମହାପ୍ରଭୁ ଲକ୍ଷ୍ମୀନୃସିଂହ ବେଶରେ ସୁସଜ୍ଜିତ ହୁଅନ୍ତି । ସେଦିନ ଠାକୁରମାନଙ୍କର ଅବକାଶ ନୀତି ପରେ ଏହି ବେଶ ହୁଏ ଓ ତାହା ବାଳଭୋଗ ପର୍ଯ୍ୟନ୍ତ ରହେ । ଏହି ବେଶ ମଧ୍ୟ ଡାଳିକିଆ ବେଶ ନାମରେ ନାମିତ । ଏହି ବେଶରେ ସୁନାକିଆ ଡାଳି ଭଳି ଖଞ୍ଜାଯାଇଥିବାରୁ ଏହାର ଏପରି ନାମକରଣ ହୋଇଛି । ଜଗନ୍ନାଥ ଓ ବଳଭଦ୍ର ମସ୍ତକର ଶୀର୍ଷ ଭାଗରେ ଜରି, ବେତ କନାରେ ଦୁଇଟି ଡାଳି ଚୂଳ ସହିତ ଲାଗି କରାଯାଏ । ଏହି ଡାଳି ଓ ଚୂଳରେ ସୋଲ ଜରିରେ ନିର୍ମିତ ଗୁଡ଼ିଏ ଫୁଲ ଧାଡ଼ି ଧାଡ଼ି କରି ଲଗାଯାଏ । ତାହା ମଝିରେ ସୁବର୍ଣ କିଆ ଖୋସାଯାଏ । ସମଗ୍ର ବେଶକୁ ଧରି ରଖିଥାଏ ଶ୍ରୀମୁଖରେ ଦିଆଯାଇଥିବା ଗୋଟିଏ ଗୋଟିଏ ବଳା ।

ଅନ୍ୟାନ୍ୟ ବେଶରେ ବ୍ୟବହାର କରାଯାଉଥିବା ସୁନା ଅଳଙ୍କାର ମଧ୍ୟ ଏହି ବେଶରେ ଲାଗି କରାଯାଏ । ଡାଳିକିଆ ବେଶରେ ମାଳି, ପଦକ ମାଳି ଓ ତାବିଜ ମାଳି ଲଗାଯାଏ । ଶ୍ରୀଭୁଜ ଓ ଶ୍ରୀପୟର ମଧ୍ୟ ଲାଗି କରାଯାଏ । ଆୟୁଧ ଶଙ୍ଖ, ଚକ୍ର, ହଳ, ମୁଷଳ ମଧ୍ୟ ଲାଗି କରାଯାଏ । ସୁଭଦ୍ରା ମଧ୍ୟ ଏହି ବେଶରେ ଅନେକ ସୁନା ଅଳଙ୍କାରରେ ଆଭୂଷିତ ହୁଅନ୍ତି । ଦେବୀଙ୍କର ଶିରରେ ସୁନାର କିରୀଟ ଲାଗେ । ଶ୍ରୀମନ୍ଦିର ପ୍ରଶାସନ ପକ୍ଷରୁ ଏହି ବେଶର ସମସ୍ତ ଖର୍ଚ୍ଚ ବହନ କରାଯାଏ ।

ଜଗନ୍ନାଥଙ୍କର ଏହି ବେଶ ମହାପ୍ରଭୁଙ୍କୁ ନୃସିଂହ ଭାବରେ ପ୍ରମାଣିତ କରେ । ସ୍କନ୍ଦ ପୁରାଣ ଅନୁସାରେ ମହାପ୍ରଭୁ ପ୍ରଥମେ ନୃସିଂହ ରୂପରେ ଦେଖା ଦେଇଥିଲେ । ତାଙ୍କର ନବକଳେବରରେ ସମସ୍ତ କାର୍ଯ୍ୟ ନୃସିଂହ ମନ୍ତ୍ରରେ କରାଯାଏ । ବସ୍ତୁତଃ ଜଗନ୍ନାଥ ହିଁ ନୃସିଂହ - ଏହି ପ୍ରଥା ପ୍ରଦର୍ଶନ ପାଇଁ ଏହି ବେଶ କରାଯାଏ । ସ୍କନ୍ଦ ପୁରାଣ ଅନୁସାରେ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରାର୍ଥନା ଫଳରେ ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠିତ ଦାରୁମୂର୍ତ୍ତି ତେଜୋମୟ ଉଗ୍ରରୂପ ତ୍ୟାଗ କରି ଶାନ୍ତ ନୃସିଂହ ମୂର୍ତ୍ତି ଧାରଣ କରନ୍ତି । ଦେବୀ କମଳା ତାଙ୍କର ହୃଦୟ ପଦ୍ମରେ ବିରାଜମାନ ହୁଅନ୍ତି । ଚନ୍ଦ୍ର ସୂର୍ଯ୍ୟତୁଲ୍ୟ ତାଙ୍କର ନୟନ ଯୁଗଳ ସମୁଜ୍ଜ୍ୱଳ ହେଲା । ଦୁଇ ହସ୍ତରେ ଚକ୍ର ଓ ପିନାକ ଶୋଭା ପାଇଲା । ଅନ୍ୟ ଦୁଇଟି ହସ୍ତ ଜାନୁ ଉପରେ ପ୍ରସାରିତ ହୋଇ ଦୁଇଟି ପଦ୍ମ ପରି ଅପୂର୍ବ ଶୋଭା ଧାରଣ କଲା । ଓଁକାର ରୂପ କର୍ଣ୍ଣିକା ଶୋଭିତ ମନ୍ତ୍ରାକ୍ଷରମୟ ଦ୍ୱାତ୍ରିଂଶ ପଦ୍ମଦଳ ମଧ୍ୟରେ ସୁଖାସୀନ ହୋଇ ପ୍ରଭୁ କମଳା ଦେବୀଙ୍କର ମୁଖ ପଦ୍ମକୁ ନିରୀକ୍ଷଣ ପୂର୍ବକ ଅଟ୍ଟହାସ୍ୟ କଲେ । ତାଙ୍କର ସର୍ବାଙ୍ଗ ରତ୍ନ ଅଳଙ୍କାରରେ ଉଦ୍‌ଭାସିତ ହେଉଥିଲା ଏବଂ ସେ ଯୋଗ ମାର୍ଗରେ ଅଧିଷ୍ଠିତ ଥିଲେ । ହଳ ଲାଙ୍ଗଳଧାରୀ ବଳଦେବ ତାଙ୍କର ପୃଷ୍ଠ ଦେଶରେ ସହସ୍ର ଫଣା ମଣ୍ଡଳ ବିସ୍ତାର ପୂର୍ବକ ଛତ୍ରାକାର କରି ରହିଥିଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ଭଗବାନଙ୍କର ଏହି ରୂପ ଦର୍ଶନ କରି ଅତ୍ୟନ୍ତ ଆନନ୍ଦିତ ହେଲେ ।

ବୋଧହୁଏ ଜଗନ୍ନାଥଙ୍କର ଏହି ପ୍ରସଙ୍ଗକୁ ବିଚାରକୁ ନେଇ ଲକ୍ଷ୍ମୀନୃସିଂହ ବେଶ କରାଯାଉଛି । ଏହି ବେଶ କେବେଠାରୁ ହେଉଛି ତାହା କହିବା ବଡ଼ କଷ୍ଟକର ।



ଡାଳିକିଆ (ଲକ୍ଷ୍ମୀନୃସିଂହ) ବେଶ

# ନାଗାର୍ଜୁନ ବେଶ

ଯେଉଁ ବର୍ଷ କାର୍ତିକ ମାସର ପଞ୍ଚୁକ ପାଞ୍ଚ ଦିନ ପରିବର୍ତ୍ତେ ଛଅ ଦିନ ହୁଏ ଅର୍ଥାତ୍ ଏକାଦଶୀରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ତିଥି ଦୁଇ ଦିନ ଭୋଗ ହୁଏ, ସେ ବର୍ଷ ନାଗାର୍ଜୁନ ବେଶ ହୁଏ। ଯେଉଁ ତିଥି ପୂର୍ବଦିନ ଓ ପରଦିନ ସୂର୍ଯ୍ୟୋଦୟକୁ ଥାଏ ତାହାକୁ ବଢ଼ାତିଥି କୁହାଯାଏ। ପୂର୍ବୋକ୍ତ ବଢ଼ାତିଥିରୁ ପ୍ରଥମ ଦିବସକୁ ଶୁଦ୍ଧା ତିଥି ଓ ପରବର୍ତ୍ତୀ ଦିବସକୁ ମଳ ତିଥି କୁହାଯାଏ। ଏହି ମଳ ତିଥିରେ ନାଗାର୍ଜୁନ ବେଶ ହୁଏ। ଉକ୍ତ ବେଶ ଶ୍ରୀଜଗନ୍ନାଥଙ୍କର ପାରମ୍ପରିକ ବେଶ ନୁହେଁ। ତେଣୁ ପ୍ରତିବର୍ଷ ଏହି ବେଶ ପଡ଼ିନଥାଏ। ୧୯୯୪ ପରେ ଏହି ବେଶ ପାଇଁ ଆଉ ଯୋଗ ପଡ଼ିନାହିଁ।

ଏହି ବେଶରେ ଜଗନ୍ନାଥଙ୍କୁ ଏକ ଯୋଦ୍ଧା ରୂପରେ ସଜେଇ ଦିଆଯାଏ। ପୁରୀର ସାହିଯାତର ନାଗା ବେଶ ସହିତ ଏହି ବେଶର ସଂପର୍କ ଥିବା ଭଳି ଜଣାଯାଏ। ଏହି ବେଶରେ ମହାପ୍ରଭୁଙ୍କ ଅଣ୍ଟାରେ ଏକ ନାଗା ତାଟି ଭିଡ଼ାଯାଏ। ତାଙ୍କୁ ଧନୁ, ଶରପୂର୍ଣ୍ଣ ତୂଣୀର, କଟାରି, ଛୁରି, ବାଘନଖ, ଏରା ପକ୍ଷୀର ପର, ଢାଲ (ଅଣ୍ଟାରେ) ଏବଂ ମୁଣ୍ଡରେ ହାଣ୍ଡିଆ (ସୋଲରେ ତିଆରି) ରଖି ସଜେଇ ଦିଆଯାଏ। ଢାଲ, ଛୁରି, କଟାରି ସୋଲରେ ନିର୍ମିତ ହୁଏ। ମସ୍ତକ ଶୋଭିତ ହାଣ୍ଡିଆ ମଧ୍ୟ ସୋଲରେ ପ୍ରସ୍ତୁତ ହୁଏ। ବାଉଁଶ ଓ ବେତରେ ଧନୁ ଓ ଶର, ତୀରଗୁଡ଼ିକ ତିଆରି କରାଯାଏ। ବାଘଛାଲ, ସିଙ୍ଘଡ଼ା, କଳଫି ମଧ୍ୟ ମହାପ୍ରଭୁଙ୍କୁ ଲାଗି କରାଯାଏ। ମହାପ୍ରଭୁ ଓ ବଳଭଦ୍ର ନାଗାର୍ଜୁନ ବେଶ ପାଇଁ ଶ୍ରୀହସ୍ତ ଓ ଶ୍ରୀପୟର ଲାଗି ହୁଅନ୍ତି। ଉଭୟ ହସ୍ତରେ ଦୁଇଟି ରୁମାଲ (ମନ୍ଦିର ଭାଷାରେ ଓଳମାଳ) ଧରିଥା'ନ୍ତି। ମହାପ୍ରଭୁଙ୍କ ବାମ ହସ୍ତରେ ରୁପା ଶଙ୍ଖ, ଦକ୍ଷିଣ ହସ୍ତରେ ଚକ୍ର, ବଳଭଦ୍ରଙ୍କ ବାମ ହସ୍ତରେ ମୁଷଳ ଓ ଦକ୍ଷିଣ ହସ୍ତରେ ହଳ ଧାରଣ କରନ୍ତି। ଏହି ବେଶରେ ମହାପ୍ରଭୁ ଅନେକ ମାଳ ଯଥା- ଘାଗଡ଼ା ମାଳି, ପଦ୍ମ ମାଳି, ହରିଡ଼ା କଣ୍ଠି ମାଳି, ବାଘନଖି ମାଳି ଇତ୍ୟାଦିରେ ଭୂଷିତ ହୁଅନ୍ତି। ଫୁଲହାର ତାଙ୍କର ଶୋଭା ବର୍ଦ୍ଧନ କରେ। ବାହୁ ମୂଳରେ କଲିଙ୍ଗ, କଟିର କଟି ଢାଲ, କମରପଟିରେ ଛୁରି, କଟାରି, ସିଙ୍ଘଡ଼ା ଓ ଜଙ୍ଘରେ ଘଣ୍ଟି ବନ୍ଧାଯାଏ। ସୁଭଦ୍ରାଙ୍କ ଶିରରେ ସୁନାର ମୁକୁଟ ଓ ଚନ୍ଦ୍ରିକା, କର୍ଣ୍ଣାଳଙ୍କାର ତଡ଼ଗି, ଗଳାରେ ହାର ଶୋଭପାଏ। ଶ୍ରୀଜଗନ୍ନାଥଙ୍କ ନାଗାର୍ଜୁନ ବେଶର ପୃଷ୍ଠଭାଗରେ ବନ୍ଧାଯାଉଥିବା ଧନୁର ଉଭୟ ହୁଳରେ ଦୁଇଗୋଟି ମୟୂର କଣ୍ଠ ମସ୍ତକ ସଜ୍ଜିତ ହୋଇଥିବା ଦେଖି କେତେକ ଏହାଙ୍କୁ କାର୍ତ୍ତିକେୟଙ୍କ ବେଶ ବୋଲି ସୁଦ୍ଧା ମତ ଦିଅନ୍ତି। ଅନ୍ୟ ଗବେଷକଙ୍କ ମତରେ ନାଗାବେଶଧାରୀ ପର୍ଶୁରାମଙ୍କ ଦ୍ୱାରା ଅର୍ଜୁନାନ୍ତକ ହେବାରୁ ଉକ୍ତ ବେଶର ନାମ ନାଗାର୍ଜୁନ ହେଲା। ଅର୍ଜୁନଙ୍କ ପୁତ୍ର ନାଗାର୍ଜୁନ ଓ ଅର୍ଜୁନଙ୍କ ଯୁଦ୍ଧ ଏବଂ ମଳତିଥିରେ ଅର୍ଜୁନଙ୍କ ପୁନର୍ଜନ୍ମ ମଧ୍ୟ ଏହି ବେଶର ନେପଥ୍ୟ କାରଣ ବୋଲି କିଛି ଗବେଷକ ମତ ଦିଅନ୍ତି। ମହାଭାରତରୁ ଜଣାଯାଏ ଯେ, ଏକଦା ବନବାସ କରୁଥିବା ଅର୍ଜୁନଙ୍କ ସହିତ କିରାତ ବେଶଧାରୀ ଶିବଙ୍କର ଯୁଦ୍ଧ ହୋଇଥିଲା। ଯୁଦ୍ଧରେ ଅର୍ଜୁନ ପରାସ୍ତ ହେଲେ ମଧ୍ୟ ଶିବ ତାଙ୍କୁ କୃପା କରି କେତେକ ଦିବ୍ୟ ଅସ୍ତ୍ର ପ୍ରଦାନ କରିଥିଲେ। କିରାତାର୍ଜୁନ କହିଲେ ଯେପରି ଶିବଙ୍କୁ କୁହାଯାଏ ସେପରି ନାଗାର୍ଜୁନ କହିଲେ ବିଷ୍ଣୁଙ୍କର ଏକ ରୂପ ବୋଲି ଗ୍ରହଣ କରିବା ଅତ୍ୟୁକ୍ତି ହେବ ନାହିଁ। ଶ୍ରୀମନ୍ଦିର ମଧ୍ୟରେ ଶୈବ ଓ ବୈଷ୍ଣବ ସମନ୍ୱୟ ସାଧିତ ହୋଇଥିବା ଯୋଗୁଁ ନାଗାର୍ଜୁନ ବେଶ ସେହି ମିଶ୍ରଣର ଫଳ ସ୍ୱରୂପ ବୋଲି କେହି କେହି ମତ ଦେଇଥାନ୍ତି।

# ରାଜରାଜେଶ୍ୱର ବେଶ

କାର୍ତ୍ତିକ ମାସରେ ଶ୍ରୀମନ୍ଦିରରେ ରତ୍ନ ସିଂହାସନରେ ଅଧିଷ୍ଠିତ ଶ୍ରୀବିଗ୍ରହମାନଙ୍କରେ କେତେକ ସ୍ୱତନ୍ତ୍ର ନୀତି ଓ ଆକର୍ଷଣୀୟ ବେଶ ଅନୁଷ୍ଠିତ ହୋଇଥାଏ । ତା ମଧ୍ୟରେ କାର୍ତ୍ତିକ ପୂର୍ଣ୍ଣିମାରେ ଠାକୁରମାନଙ୍କର ରାଜବେଶ ଅନ୍ୟତମ । ଏହି ରାଜବେଶକୁ କେତେକ 'ରାଜ ରାଜେଶ୍ୱର' ବେଶ ବୋଲି କହିଥାନ୍ତି । ଏହା ସୁନା ବେଶର ଅନୁରୂପ ।

ଅତୀତରେ ଓଡ଼ିଶାର ବହୁ ରାଜା, ଜମିଦାର ଓ ସାମନ୍ତବର୍ଗ ଶ୍ରୀମନ୍ଦିରକୁ ଆଗମନ ପୂର୍ବକ ଦାରୁବ୍ରହ୍ମରୂପୀ ଶ୍ରୀବିଗ୍ରହମାନଙ୍କର ଏହି ରାଜବେଶ ଦର୍ଶନରେ ପରମ ସନ୍ତୋଷ ଲାଭ କରିବା ସଂଗେ ସଂଗେ ଠାକୁରମାନଙ୍କ ଉଦ୍ଦେଶ୍ୟରେ ନାନାଦି ରତ୍ନ ଅଳଙ୍କାର ଦାନ କରୁଥିଲେ । ମୟୂରଭଞ୍ଜର ରାଜା ଓ ପାରଳାଖେମୁଣ୍ଡି ରାଜ୍ୟର ଗଜପତିମାନେ କାର୍ତ୍ତିକ ପୂର୍ଣ୍ଣିମା ଦିନ ଠାକୁରମାନଙ୍କ 'ରାଜ ରାଜେଶ୍ୱର' ବେଶ ଦର୍ଶନ କରି ମହାପ୍ରଭୁଙ୍କୁ ସୁନିଆ ଭେଟି ଦେଇ ମହୋତ୍ସବ କରାଉଥିବା ଜଣାଯାଏ । ଉତ୍କଳର ରାଜା ଓ ସାମନ୍ତ ରାଜାମାନଙ୍କ ପକ୍ଷେ ଏହି ବେଶ ଅତ୍ୟନ୍ତ ପବିତ୍ର ଓ ଦର୍ଶନୀୟ ଥିଲା । ଏହିଦିନ କାର୍ତ୍ତିକ ମାସ ନୀତିର ଉଦ୍‌ଯାପନ ଜନିତ ରାଜ ନୀତି ଓ ବନ୍ଦାପନା ହୋଇଥାଏ ।

କାର୍ତ୍ତିକ ପୂର୍ଣ୍ଣମୀ ଦିନ ମହାପ୍ରଭୁମାନଙ୍କ ଅବକାଶ ନୀତି ପରେ ରାଜବେଶ ହୋଇଥାଏ । ପୁଷ୍ପାଳକ ସେବକମାନେ ବିଭିନ୍ନ ରତ୍ନ ଅଳଙ୍କାର ଓ ପାଟବସ୍ତ୍ରରେ ଶ୍ରୀଜୀଉମାନଙ୍କୁ ରାଜବେଶରେ ଭୂଷିତ କରିଥାନ୍ତି । ଏହି ବେଶ ସକାଳ ଧୂପ ଓ ଭୋଗମଣ୍ଡପ ଧୂପ ଇତ୍ୟାଦି ଶେଷ ହେବାପରେ ସର୍ବସାଧାରଣଙ୍କର ସାହାଣମେଲା ଦର୍ଶନ ହୋଇଥାଏ । ଏହି ବେଶଟି ସୁନାବେଶ ହୋଇଥିବାରୁ ଏହି ବେଶରେ ସମସ୍ତ ସୁବର୍ଣ୍ଣ ଅଳଙ୍କାର ଲାଗି କରାଯାଏ । ଜଗନ୍ନାଥ ଗୋପାଳ କୃଷ୍ଣ ଏବଂ ଦ୍ୱାରକା କୃଷ୍ଣ ଉଭୟଙ୍କର ସଂଯୋଗରେ ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟ ଭାବ ପ୍ରକାଶ କରୁଥିବାରୁ କାର୍ତ୍ତିକ ମାସରେ ରାଧା ଦାମୋଦର ବେଶରେ ମାଧୁର୍ଯ୍ୟ ଓ ରାଜରାଜେଶ୍ୱର ବେଶରେ ଐଶ୍ୱର୍ଯ୍ୟ ଭାବ ପ୍ରକାଶ ପାଏ । ପୁଷ୍ପାଳକ ସେବକମାନେ ବିଭିନ୍ନ ରତ୍ନ ଅଳଙ୍କାର ଓ ପାଟବସ୍ତ୍ରରେ ଶ୍ରୀଜୀଉଙ୍କର ରାଜରାଜେଶ୍ୱର ବେଶ କରାନ୍ତି । ରାଜବେଶରେ ନିମ୍ନଲିଖିତ ସୁନା ଅଳଙ୍କାର ଲାଗି କରାଯାଏ:-

ଶ୍ରୀଭୁଜ- ୪, କଦମ୍ବ ମାଳି-୪ ମୂର୍ତ୍ତି, ବାହାଡ଼ା ମାଳି- ୨ ମୂର୍ତ୍ତି, କିରୀଟ- ୩ ମୂର୍ତ୍ତି, ହରିଡ଼ା କଦମ୍ବ ମାଳି- (୧=୩୮ କଦମ୍ବ+ ୩୮ ହରିଡ଼ା), ଶ୍ରୀପୟର- ୪ ମୂର୍ତ୍ତି, ତାବିଜ ମାଳି- ୧ ମୂର୍ତ୍ତି, ବାଘନଖି ମାଳି- ୧ ମୂର୍ତ୍ତି, କର୍ଣ୍ଣ- ୬ ମୂର୍ତ୍ତି, ସେବତୀ ମାଳି- ୩ ମୂର୍ତ୍ତି, ଓଡ଼ିଆଣି- ୩ ମୂର୍ତ୍ତି, ଚନ୍ଦ୍ରସୂର୍ଯ୍ୟ- ୬, କୁଣ୍ଡଳ- ୪, ଚକ୍ର, ଶଙ୍ଖ- ୧ ମୂର୍ତ୍ତି, ହଳ ମୁଷଳ- ୨ ମୂର୍ତ୍ତି, ଚିତା (ତିଳକ)- ୨, ତ୍ରିଶାଖା- ୨ ମୂର୍ତ୍ତି, ଚନ୍ଦ୍ରିକା- ୨, ରୁପା ଶଙ୍ଖ- ୧ ମୂର୍ତ୍ତି, ଅଳକା- ୩ ମୂର୍ତ୍ତି, ଘାଘଡ଼ା ମାଳ- ୧, ଶ୍ରୀମୁଖ ପଦ୍ମ- ୪ ମୂର୍ତ୍ତି ଓ ତଡ଼ଗି- ୨ ମୂର୍ତ୍ତି । ଏହି ବେଶରେ ବଲ୍ଲଭ, ସକାଳ ଧୂପ, ଭୋଗମଣ୍ଡପ ଇତ୍ୟାଦି ନୀତି ଶେଷ ହେବା ପରେ ସର୍ବସାଧାରଣଙ୍କ ଉଦ୍ଦେଶ୍ୟରେ ସାହାଣମେଲା ହୋଇଥାଏ ।



ରାଜରାଜେଶ୍ୱର ବେଶ

# ବାମନ ବେଶ

ଭାଦ୍ରବ ମାସ ଶୁକ୍ଳ ପକ୍ଷ ଦ୍ୱାଦଶୀ ତିଥିଟି ଶ୍ରୀଜଗନ୍ନାଥ ମନ୍ଦିର ପାଇଁ ଏକ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଦିବସ । ଏ ଦିନ ଭଗବାନ ବାମନଙ୍କର ଜନ୍ମୋତ୍ସବ । ଶ୍ରୀଜଗନ୍ନାଥ ହେଉଛନ୍ତି ସ୍ୱୟଂ ବିଷ୍ଣୁ । ଏହି ବିଷ୍ଣୁ ତାହାଙ୍କର ପଞ୍ଚମ ଅବତାରରେ ବାମନ ରୂପେ ଆବିର୍ଭୂତ ହୋଇଥିଲେ । ପୌରାଣିକ ଉପାଖ୍ୟାନ ଅନୁସାରେ ଏହିଦିନ ଏକ ଶୁଭ ମୁହୂର୍ତ୍ତରେ ଭଗବାନ ବିଷ୍ଣୁ ଏକ ଦିବ୍ୟ, ଜ୍ୟୋତିର୍ମୟ ବାମନ ବାଳକ ରୂପରେ ଧରିତ୍ରୀରେ ଅବତରଣ କରିଥିଲେ । ଏଣୁ ନୃସିଂହ ଚତୁର୍ଦ୍ଦଶୀ ଓ ଶ୍ରୀକୃଷ୍ଣ ଜନ୍ମାଷ୍ଟମୀ ଉତ୍ସବ ପରି ଶ୍ରୀଜଗନ୍ନାଥ ମନ୍ଦିରରେ ଭାଦ୍ରବ ମାସ ଶୁକ୍ଳପକ୍ଷ ଦ୍ୱାଦଶୀ ଦିନ ବାମନ ଜନ୍ମ ମହାସମାରୋହରେ ପାଳିତ ହେବା ସଂଗେ ସଂଗେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଏକ ମନୋମୁଗ୍ଧକର ବାମନରୂପ ବାଳକ ବେଶରେ ସଜ୍ଜିତ କରାଯାଇଥାଏ ।

ସେଦିନ ଶ୍ରୀମନ୍ଦିରରେ (ବାମନଙ୍କ) ଜନ୍ମୋତ୍ସବ ନୀତି ଓ ଦ୍ୱିପ୍ରହର ଧୂପ ଶେଷ ହେବାପରେ ଜଗନ୍ନାଥ ମହାପ୍ରଭୁ ବାମନ ବେଶ ଧାରଣ କରିଥାନ୍ତି । ଏଥିରେ ଶ୍ରୀସୁଭଦ୍ରା ସାଧାରଣ ବେଶ ଓ ଶ୍ରୀବଳଭଦ୍ର ରାଜ ବେଶରେ ଦୃଶ୍ୟମାନ ହେବା ସଂଗେ ସଂଗେ ଶ୍ରୀଜଗନ୍ନାଥ ମହାପ୍ରଭୁ ଶ୍ରୀଭୁଜ, ଶ୍ରୀପୟର ଓ ସ୍ୱର୍ଣ୍ଣ କିରୀଟରେ ଆଭୂଷିତ ହୋଇଥାନ୍ତି । ମହାପ୍ରଭୁଙ୍କ ଶ୍ରୀଭୁଜର ବାମ ହସ୍ତରେ ଛତା ଓ ଡାହାଣ ହସ୍ତରେ କୁଶବଟୁ ଗଡୁ ଧରାଯାଇ ଏକ ବାମନରୂପୀ ନୈଷ୍ଠିକ ବ୍ରାହ୍ମଣ ବେଶରେ ଭୂଷିତ କରାଯାଇଥାଏ । ପୁଷ୍ପାଳକ ସେବକମାନେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଏପରି ବେଶ କରିଥାନ୍ତି, ଜଣାଯାଏ ସତେ ଯେପରି ଜଗନ୍ନାଥ ମହାପ୍ରଭୁ ସ୍ୱୟଂ ଏକ ବାମନ ବା କ୍ଷୁଦ୍ରକାୟ ବିପ୍ର ।

ବାମନ ବେଶରେ ଠାକୁରଙ୍କୁ ଲାଗି କରାଯାଉଥିବା ସ୍ୱର୍ଣ୍ଣ ଅଳଙ୍କାର ଇତ୍ୟାଦି ବେଶ ଦିବସ ପୂର୍ବରୁ ରତ୍ନଭଣ୍ଡାରୁ କଢ଼ାଯାଇ ଭଣ୍ଡାର ମେକାପ ସେବକଙ୍କ ମାରଫତ୍‌ରେ ରହିଥାଏ । ଶ୍ରୀଜଗନ୍ନାଥ ବାମନ ଭାବରେ ସୁପରିଚିତ । ବିଶେଷକରି ରଥ ସମୟରେ ତାଙ୍କୁ ବାମନ ଭାବରେ ବର୍ଣ୍ଣନା କରାଯାଇ କୁହାଯାଇଛି ରଥେତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ । ପୁନଶ୍ଚ ଆଷାଢ଼ ମାସରେ ମହାପ୍ରଭୁଙ୍କୁ ରଥରେ ବାମନ ସ୍ୱରୂପରେ ଚିହ୍ନିତ କରାଯାଇଥାଏ । ଜଗନ୍ନାଥଙ୍କର ହସ୍ତପଦ ବିହୀନ ଅବୟବକୁ ଦର୍ଶନ କଲେ ସେ ସ୍ୱତଃ ବାମନ ଭଳି ଦେଖାଯା'ନ୍ତି । ତାଙ୍କୁ ପିଣ୍ଡି ଉପରୁ କାଢ଼ି ଆଣିଲେ ସେ ଏପରି ଛୋଟ ଦେଖାଯା'ନ୍ତି ଯାହା ତାଙ୍କର ବାମନ ରୂପର ସାର୍ଥକତା ଆଣେ ।

# ଶ୍ରାଦ୍ଧ ବେଶ

ମହାପ୍ରଭୁ ଶ୍ରୀଜଗନ୍ନାଥ ମନୁଷ୍ୟମାନଙ୍କ ଭଳି ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ବର୍ଷରେ ତିନି ଦିନ ଦୀପଦାନ କରନ୍ତି । ମାର୍ଗଶୀର କୃଷ୍ଣ ଚତୁର୍ଦଶୀ ଦିନ ଅଦିତି କଶ୍ୟପଙ୍କ ଉଦ୍ଦେଶ୍ୟରେ, ଅମାବାସ୍ୟା ଦିନ ଦଶରଥ କୌଶଲ୍ୟାଙ୍କ ଉଦ୍ଦେଶ୍ୟରେ, ପ୍ରତିପଦା ଦିନ ବସୁଦେବ ଦେବକୀ, ନନ୍ଦ ଯଶୋଦା, ଇନ୍ଦ୍ରଦ୍ୟୁମ୍ନ ଓ ଗୁଣ୍ଡିଚା ଦେବୀଙ୍କ ଉଦ୍ଦେଶ୍ୟରେ ପ୍ରଦୀପ ଉତ୍ସର୍ଗ କରନ୍ତି । ପ୍ରଥମ ଦିନରୁ ଦୀପାବଳି ଉତ୍ସବ ଆରମ୍ଭ ହୋଇ ତୃତୀୟ ଓ ଶେଷଦିନରେ ଶେଷ ଦୀପାବଳି ଉତ୍ସବ ପାଳନ କରାଯାଏ । ଏହି ଦିନମାନଙ୍କରେ ଶ୍ରୀଜଗନ୍ନାଥ ମହାପ୍ରଭୁ ଶ୍ରାଦ୍ଧ ବେଶରେ ପିତୃ ପୁରୁଷଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ ତର୍ପଣାଦି କରୁଥିବାରୁ ଏହାକୁ 'ଦେବ ଦୀପାବଳି' କୁହାଯାଏ । ଶ୍ରୀଜଗନ୍ନାଥଙ୍କ ପିତାମାତା ଯଥା ଦଶରଥ, ନନ୍ଦ, ବସୁଦେବଙ୍କ ଉଦ୍ଦେଶ୍ୟରେ ଦୀପଦାନ ପୂର୍ବକ ସେ ଶ୍ରାଦ୍ଧୋତ୍ସବ ପାଳନ କରିଥାନ୍ତି । ଇନ୍ଦ୍ରଦ୍ୟୁମ୍ନଙ୍କୁ ମଧ୍ୟ ଏହି ଦିବସରେ ମହାପ୍ରଭୁ ଦୀପଦାନ ଦେଇଥାନ୍ତି । ଅଦିତି ଦକ୍ଷ ପ୍ରଜାପତିଙ୍କ କନ୍ୟା । ମହର୍ଷି କଶ୍ୟପ ଏହାଙ୍କ ସ୍ୱାମୀ । ଇନ୍ଦ୍ରାଦି ଦେବତାମାନେ ଓ ବାମନ ଅବତାରରେ ବିଷ୍ଣୁ ଅଦିତି ଗର୍ଭରୁ ଜନ୍ମ ହୋଇଥିବାରୁ ଅଦିତି-କଶ୍ୟପ ଭଗବାନଙ୍କର ମାତା-ପିତା । ତ୍ରେତୟାରେ କୌଶଲ୍ୟା-ଦଶରଥ ରାମଚନ୍ଦ୍ରଙ୍କର ମାତାପିତା ଥିଲେ । ଦ୍ୱାପର ଯୁଗରେ ଦେବକୀ-ବସୁଦେବ ଓ ଯଶୋଦା-ନନ୍ଦ ଶ୍ରୀକୃଷ୍ଣଙ୍କର ପିତାମାତା । ଏମାନଙ୍କୁ ଜଗନ୍ନାଥ ଶ୍ରାଦ୍ଧ ଦିଅନ୍ତି । ନିର୍ବଂଶ ହୋଇଯିବା ପାଇଁ ବର ମାଗିଥିବା ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ମଧ୍ୟ ଜଗନ୍ନାଥ ନିଜେ ଶ୍ରାଦ୍ଧ ଦେଉଥିବା ଗବେଷକ ମତ ଦେଇଥାନ୍ତି ।

ପୁଷ୍ପାଳକ ସେବକମାନେ ଠାକୁରମାନଙ୍କୁ ଶ୍ରାଦ୍ଧ ବେଶରେ ନାଗପୁରୀ ଶାଢ଼ି ଚାଦରରେ ଭୂଷିତ କରାଇଥାନ୍ତି । ଏହି ସମୟରେ ଶ୍ରୀବିଗ୍ରହଙ୍କୁ ସାଧାବେଶରେ ସଜ୍ଜିତ କରାଯାଏ । ଏଥିରେ ଠାକୁରମାନେ ଧଳାବସ୍ତ୍ର ପରିହିତ ହୋଇଥା'ନ୍ତି । କିନ୍ତୁ ପ୍ରତ୍ୟେକ ଠାକୁରଙ୍କ ଧଡ଼ିଗୁଡ଼ିକ ଭିନ୍ନ ରଙ୍ଗର ହୋଇଥାଏ । ନିମ୍ନରେ ଠାକୁରମାନଙ୍କ ବସ୍ତ୍ରର ମାପ ଓ ଧଡ଼ି ରଙ୍ଗର ବର୍ଣ୍ଣନା ପ୍ରଦତ୍ତ କରାଗଲା ।

ଶ୍ରୀଜଗନ୍ନାଥଃ ସୂତାଶାଢ଼ି (ନାଗପୁରୀ ଶାଢ଼ି) ଲମ୍ବା ୧୬ ହାତ କିମ୍ବା ୧୮ ହାତ, ଓସାର ପାଞ୍ଚ ହାତ, ଧଡ଼ି ଓସାର ଏକଫୁଟ୍ ଅଟେ । ଉକ୍ତ ବସ୍ତ୍ରରେ କୁମ୍ଭ ଥାଇ ଧଡ଼ିର ବର୍ଣ୍ଣ ହେଉଛି ନାଲି ।

ଶ୍ରୀବଳଭଦ୍ରଃ ଲମ୍ବା ୧୪ ହାତ । ଓସାର ୪ ହାତ,ଧଡ଼ି ଓସାର ଏକଫୁଟ୍, ଉକ୍ତ ବସ୍ତ୍ରର ଧଡ଼ିର ବର୍ଣ୍ଣ ହେଉଛି କଳା ।

ଶ୍ରୀସୁଭଦ୍ରାଃ ଲମ୍ବା ୧୨ ହାତ । ଓସାର ସାଢ଼େ ତିନି ଫୁଟ୍, ଧଡ଼ି ଓସାର ଏକଫୁଟ୍ । ଉକ୍ତ ବସ୍ତ୍ରର ଧଡ଼ି ବର୍ଣ୍ଣ ହେଉଛି ହଳଦିଆ ।

ଏତଦ୍‌ବ୍ୟତୀତ ଶ୍ରୀ ବିଗ୍ରହମାନଙ୍କ କଳେବର ଗୋଟିଏ ଗୋଟିଏ ଚାଦରରେ ମଣ୍ଡନ ହୋଇଥାଏ । ଶିର ଦେଶରେ ଶ୍ରୀକାପଡ଼ା ବସ୍ତ୍ର (ସୂତା ବସ୍ତ୍ର)ରେ ଆବୃତ କରାଯାଏ । ଚାଦରଟି ଶ୍ରୀଭୁଜରେ ପ୍ରସରିଥାଏ । ଶ୍ରାଦ୍ଧ ବେଶରେ ବ୍ୟବହୃତ ହେଉଥିବା ବସ୍ତ୍ରକୁ ସାଧାରଣରେ 'କାଇ ଧଡ଼ିଆ' (ନାଗପୁରୀ) ଲୁଗା ନାମରେ କୁହାଯାଇଥାଏ । ଶ୍ରାଦ୍ଧ ବେଶରେ ଠାକୁରମାନଙ୍କୁ ଲାଗି କରାଯାଉଥିବା ସ୍ୱର୍ଣ୍ଣ ଅଳଙ୍କାର ମଧ୍ୟରେ ତଡ଼ଗୀ, ନଳିଭୁଜ, ଚନ୍ଦ୍ର, ସୂର୍ଯ୍ୟ, କୁଣ୍ଡଳ, ଆଡ଼କାନି, ହରିଡ଼ା ମାଳି, ଅଷ୍ଟାକମରପଟି ପ୍ରଭୃତି ଅନ୍ୟତମ ।

# ଚାଚେରୀ ବେଶ

ଫାଲ୍‌ଗୁନ ଶୁକ୍ଳ ଦଶମୀଠାରୁ ଚତୁର୍ଦ୍ଦଶୀ ପର୍ଯ୍ୟନ୍ତ ପାଞ୍ଚ ଦିନ ଧରି ରତ୍ନ ସିଂହାସନରେ ଉପବିଷ୍ଟ ଶ୍ରୀବିଗ୍ରହମାନଙ୍କର 'ଚାଚେରୀ ବେଶ' ଅନୁଷ୍ଠିତ ହୋଇଥାଏ। ଉକ୍ତ ଦିନ ମାନଙ୍କରେ ଠାକୁରମାନଙ୍କ ମଧ୍ୟାହ୍ନ ଧୂପ ଶେଷ ହେବାପରେ ଏହି ବେଶ କରାଯାଇଥାଏ।

ଏହି ବେଶରେ ପ୍ରଥମେ ମେକାପ ସର୍ବାଙ୍ଗ (ଚନ୍ଦନଲାଗି) ଓ ବୋଇରାଣୀ (ବସ୍ତ୍ର) ମାଧାବଳୀ ଇତ୍ୟାଦି ନୂଆ ଲୁଗାମାନ ଲାଗି ହୋଇ ଠାକୁରଙ୍କୁ ଛଅ ମୂର୍ତ୍ତି ଅଳଙ୍କାରରେ ଭୂଷିତ କରାଯାଇଥାଏ। ଏହାପରେ ଶ୍ରୀଦେବୀ ଓ ଭୂଦେବୀ ଦକ୍ଷିଣୀ ଘରକୁ ବିଜେ ହୋଇଥା'ନ୍ତି। ସେଠାରେ ଶ୍ରୀବିଗ୍ରହମାନଙ୍କର ଚାଚେରୀ ବେଶ ବଢ଼ିବା ପରେ ଚଳନ୍ତି ପ୍ରତିମା ଦୋଳଗୋବିନ୍ଦ, ଭୂଦେବୀ, ଶ୍ରୀଦେବୀଙ୍କ ବାହାର ଦେଉଳି ଭୋଗ ହୋଇଥାଏ ଓ ତତ୍‌ପରେ ରତ୍ନସିଂହାସନକୁ ବିଜେ ହୋଇଥା'ନ୍ତି। ଏହି ସମୟରେ ମୁଦିରସ୍ତ ପ୍ରସାଦ ଲାଗି କରନ୍ତି। ଚାଚେରୀ ଭୋଗ ସରି ପାଣି ପଡ଼ି ଘଣ୍ଟ ଛତା ସର୍ବାଙ୍ଗ ତିନି ବାଡ଼ରେ ହୋଇଥାଏ। କେବଳ ମହାପ୍ରଭୁ (ଜଗନ୍ନାଥ)ଙ୍କ ବାଡ଼ରେ ସୁନ୍ଦର, ଚନ୍ଦନ, ଫଗୁ, ଝିମିରଫଗୁ, ପ୍ରସାଦି ଲାଗି ଓ ବନ୍ଦାପନା ହୋଇଥାଏ। ଏତଦ୍‌ବ୍ୟତୀତ ମହାପ୍ରଭୁଙ୍କ ବାଡ଼ରେ ଆଉ ଏକ ଗୋଟି କର୍ପୂର ଆରତି ହୁଏ। ମୁଦିରସ୍ତ ଚାମର ଆଲଟ କରି ସିଂହାସନ ତଳକୁ ଓହ୍ଲାଇବେ। ତିନି ବାଡ଼ରେ ଫଗୁ ଆଞ୍ଜୁଳି ଦେଇ ସାରିବା ପରେ ପୂଜାପଣ୍ଡା, ପତି ମହାପାତ୍ର, ମୁଦିରସ୍ତ ସିଂହାସନ ଉପରକୁ ଉଠି ପ୍ରସାଦ ମଇଲମ କରିବେ। ଏହାପରେ ପୂଜାପଣ୍ଡା ଦୋଳଗୋବିନ୍ଦ, ଭୂଦେବୀ, ଶ୍ରୀଦେବୀଙ୍କୁ ଆଜ୍ଞାମାଳ ଦେଇ ଶ୍ରୀଅଙ୍ଗରୁ ସାମାନ୍ୟ ଦୂରକୁ ଛଡ଼ାଇଦେବାପରେ ମହାଜନ (ପୁଷ୍ପାଳକ)ମାନେ ହାତରେ ବିଜେ କରି ଜୟ ବିଜୟ ଦ୍ୱାରଠାରେ ଉଭା କରିବା ସମୟରେ ମୁଦିରସ୍ତ ପ୍ରସାଦ ଲାଗି, କର୍ପୂର ଆଳତୀ, ଦୃବାକ୍ଷତ, ସାତବତି, ସଞ୍ଜ କାହାଳି, ବନ୍ଦାପନା ଇତ୍ୟାଦି ନୀତି କରାଯାଇଥାଏ। ଏହିପରି ଚାଚେରୀ ବେଶ ସମୟରେ ହେଉଥିବା ଭୋଗ ମଧ୍ୟରେ ସାନ ଆରିସା, ବଡ଼ ଆରିସା, ଧଉଳା, ଘିନାଡ଼ି, ମରିଚିନଡ୍ଡୁ, ଖିରି ପ୍ରଭୃତି ଅନ୍ୟତମ ଅଟେ। କଥିତ ଅଛି ଯେ, ଶ୍ରୀମହାପ୍ରଭୁମାନଙ୍କ 'ଚାଚେରୀ ବେଶ' ଦର୍ଶନରେ ଭକ୍ତମାନଙ୍କ ମନରେ ଅପାର ସନ୍ତୋଷ ମିଳିଥାଏ।

ସର୍ବତ୍ର ଚାଚେରୀ ଭୋଗ ଓ ଚାଚେରୀ ଭ୍ରମଣ ବହିରାଗତ ଦେବତାମାନଙ୍କ ଉଦ୍ଦେଶ୍ୟରେ କରାଯାଉଥିବାବେଳେ ଜଗନ୍ନାଥଙ୍କର ଚାଚେରୀ ଭୋଗ ଓ ଚାଚେରୀ ବେଶ କରାଯାଏ। ଜଗନ୍ନାଥଙ୍କର ପ୍ରତିନିଧି ଭାବରେ ଦୋଳଗୋବିନ୍ଦ ଓ ରାଧାଙ୍କ ପରିବର୍ତ୍ତେ ଲକ୍ଷ୍ମୀ ସରସ୍ୱତୀ ଚାଚେରୀ ବୁଲାରେ ଭାଗ ନିଅନ୍ତି। ଅନ୍ୟତ୍ର ଶ୍ରୀରାଧାଙ୍କର ଓ ଶ୍ରୀକୃଷ୍ଣଙ୍କର ଚାଚେରୀ ବୁଲା ପାଳିତ ହେଉଥିବାବେଳେ ଶ୍ରୀକ୍ଷେତ୍ରରେ ଶ୍ରୀଦୋଳଗୋବିନ୍ଦ ଓ ଶ୍ରୀଦେବୀ, ଭୂଦେବୀଙ୍କର ଚାଚେରୀ ଯାତ୍ରା ଓ ଭୋଗ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି। ଏହା ଶ୍ରୀମନ୍ଦିରର ମାହାତ୍ମ୍ୟ ଓ ଶ୍ରୀକ୍ଷେତ୍ରର ପ୍ରାଧାନ୍ୟକୁ ପୃଥକ ଭାବେ ଦର୍ଶାଉଅଛି।

ଚାଚେରୀ ଶବ୍ଦର ଅର୍ଥ ହେଲା ଉତ୍ସବ, ଗୀତବାଦ୍ୟ ଓ ହର୍ଷୋଲ୍ଲାସ ସୌରାଗୋତ୍ସବ। ବିଶେଷକରି ଦୋଳ ଉତ୍ସବର ଆନନ୍ଦ କଳରୋଳ ଫଗୁଖେଳ ପାଇଁ ଏହି ଶବ୍ଦଟି ବ୍ୟବହୃତ। କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଚାଚେରୀ ଶବ୍ଦର ପ୍ରୟୋଗ ତାଙ୍କ କାବ୍ୟ କବିତାରେ କହିଛନ୍ତି।

# ନବଯୌବନ ବେଶ

ସ୍ନାନ ପୂର୍ଣ୍ଣିମାର ସ୍ନାନ ପରେ ଠାକୁରମାନେ ଅଣସର ଘରେ ଯାଇ ରହନ୍ତି । ପନ୍ଦର ଦିନ ପର୍ଯ୍ୟନ୍ତ ଭକ୍ତମାନେ ତାଙ୍କର ଦର୍ଶନ ଲାଭରୁ ବଞ୍ଚିତ ହୁଅନ୍ତି । ଅଣସର ଶେଷରେ ପୁଣି ସେ ଯେଉଁଦିନ ଭକ୍ତମାନଙ୍କୁ ଦର୍ଶନ ଦିଅନ୍ତି ତାହାକୁ ନବଯୌବନ ଦର୍ଶନ କହନ୍ତି । ଖଡ଼ିଲାଗି ଓ ବନକଲାଗି ପରେ ମହାପ୍ରଭୁଙ୍କ ପ୍ରତିମା ନୂଆ ପରି ଉଜ୍ଜ୍ୱଳ ଦିଶୁଥିବାରୁ ଏହାକୁ ନବଯୌବନ କୁହାଯାଇଥାଏ । ଏହି ସମୟରେ ମହାପ୍ରଭୁ ରତ୍ନ ସିଂହାସନକୁ ଆଉ ବିଜେ କରନ୍ତି ନାହିଁ । ନବଯୌବନ ଓ ନେତ୍ରୋତ୍ସବ ପରେ ଆଷାଢ଼ ଶୁକ୍ଳପକ୍ଷ ଦ୍ୱିତୀୟା ଦିନ ରଥଯାତ୍ରାରେ ଶ୍ରୀଗୁଣ୍ଡିଚା ମନ୍ଦିର ବିଜେ କରନ୍ତି । ନବଯୌବନ ଦର୍ଶନ ଲାଭ ସୁଯୋଗକୁ ଶ୍ରଦ୍ଧାଳୁ ଭକ୍ତମାନେ ବର୍ଷ ବ୍ୟାପି ପ୍ରତୀକ୍ଷା କରିଥାଆନ୍ତି । ସମୟେ ସମୟେ ନେତ୍ରୋତ୍ସବ ଓ ନବଯୌବନ ଦର୍ଶନ ତିଥିରେ ସାମାନ୍ୟ ଏପଟ ସେପଟ ମଧ୍ୟ ହୋଇଥାଏ । ନେତ୍ରୋତ୍ସବର ଅର୍ଥ ହେଲା ମହାପ୍ରଭୁମାନଙ୍କ ଚକ୍ଷୁରେ ନବଯୌବନ ବେଶର ଅନ୍ତିମ ସ୍ପର୍ଶ ।

# ସନ୍ଧ୍ୟା ବେଶ

ସକାଳ ପାଞ୍ଚଟାରେ ଶ୍ରୀମନ୍ଦିରର ଦ୍ୱାରଫିଟା ଠାରୁ ନେଇ ମଧ୍ୟରାତ୍ରି ପର୍ଯ୍ୟନ୍ତ ମହାପ୍ରଭୁମାନଙ୍କର ଅନେକ ନୀତି ରହିଛି । ତା ଭିତରେ ଯେଉଁଦିନ ଯେଉଁ ବେଶ ହେବାର ନିର୍ଦ୍ଦିଷ୍ଟ ବ୍ୟବସ୍ଥା ରହିଥାଏ ସେହିଦିନ ଠାକୁରମାନେ ସେ ବେଶ ହୋଇଥାଆନ୍ତି । ସକାଳ ଧୂପରେ ଶ୍ରୀଜଗନ୍ନାଥ ଓ ଅନ୍ୟ ପ୍ରଭୁମାନଙ୍କ ନିକଟରେ ପ୍ରଥମ ରନ୍ଧା ଖାଦ୍ୟ ଧୂପ ଲଗାଯାଇଥାଏ । ଏହାର ସମୟ ସକାଳ ୧୦ଟା । ସେହିପରି ୧୧ଟା ବେଳେ ଆଉ ଗୋଟିଏ ଅତିରିକ୍ତ ଭୋଗ ଲଗାଯାଇଥାଏ । ଏହାକୁ ଭୋଗମଣ୍ଡପ ଭୋଗ କୁହାଯାଏ । ସେହିପରି ମଧ୍ୟାହ୍ନ ଧୂପ ଦ୍ୱିପ୍ରହର ସାଢ଼େବାରଟାରୁ ଗୋଟାଏ ସନ୍ଧ୍ୟା ଧୂପ ସନ୍ଧ୍ୟା ୭ଟାରୁ ୮ଟା ଏବଂ ବଡ଼ସିଂହାର ଧୂପ ରାତି ୧୧ଟାରେ ହେବା କଥା । ସମୟେ ସମୟେ ଅନିବାର୍ଯ୍ୟ କାରଣବଶତଃ ଏଇ ସମୟ ନିର୍ଘଣ୍ଟରେ ବ୍ୟତିକ୍ରମ ଦେଖାଯାଇଥାଏ । ସକାଳ ଧୂପ ସମୟରେ ମହାପ୍ରଭୁ ଯେଉଁ ବେଶ ହୋଇଥାଆନ୍ତି ତାହାକୁ ସକାଳ ଧୂପ ବେଶ ବୋଲି କେତେକ କହିଥାଆନ୍ତି । ସକାଳ ଧୂପ ପରେ ଠାକୁରମାନଙ୍କ ବସ୍ତ୍ର ଓଲାଗି ହୁଏ । ଠାକୁରମାନେ ଅନ୍ୟ ଏକ ସେଟ୍ ପାଟ ଓ ଖଣ୍ଡୁଆ ପିନ୍ଧନ୍ତି । ମାତ୍ର ବାରଲାଗି ବସ୍ତ୍ର ଭିତରେ ରହିଥାଏ । ଏହାପରେ ମଧ୍ୟାହ୍ନ ଧୂପ ହୁଏ । ସନ୍ଧ୍ୟା ଆରତି ପରେ ପୁଣି ବସ୍ତ୍ର ଓଲାଗି (ମଇଲମ) ହୁଏ ।

ସନ୍ଧ୍ୟାଧୂପ ପୂର୍ବରୁ ଠାକୁରମାନଙ୍କୁ ଅନ୍ୟ ଏକ ପ୍ରକାର ପାଟବସ୍ତ୍ର ପିନ୍ଧାଯାଏ । ଏହି ପାଟବସ୍ତ୍ରର ରଙ୍ଗ ବାର ଅନୁସାରେ ଭିନ୍ନ ଭିନ୍ନ । ରବିବାର- ନାଲି, ସୋମବାର- କଳାଛିଟା ମିଶା ଧଳା, ମଙ୍ଗଳବାର- ବାରପଟିଆ (ପାଞ୍ଚରଙ୍ଗ ମିଶା), ବୁଧବାର- ନୀଳ, ଗୁରୁବାର- ହଳଦିଆ, ଶୁକ୍ରବାର- ଧଳା, ଶନିବାର- କଳା ରଙ୍ଗର ପାଟ ପିନ୍ଧାଯାଏ । ସନ୍ଧ୍ୟା ଧୂପ ଶେଷଯାଏଁ ଏହି ବସ୍ତ୍ର ରହିଥାଏ ।

# ତଡ଼ପ-ଉତ୍ତରୀ ବେଶ

ସ୍ନାନବେଳେ ଠାକୁରମାନେ ଯେଉଁ ବସ୍ତ୍ର ପରିଧାନ କରନ୍ତି ସେଗୁଡ଼ିକର ନାମ ତଡ଼ପ ଓ ଉତ୍ତରୀୟ । ସୁଦର୍ଶନଙ୍କ ସମେତ ଚାରି ଦେବତାଙ୍କ ପାଇଁ ଚାରିଗୋଟି ତଡ଼ପ ବ୍ୟବହୃତ ହୁଏ । ତେବେ ଉତ୍ତରୀୟ ବ୍ୟବହୃତ ହୁଏ ମାତ୍ର ଦୁଇଗୋଟି । ତାହା ଜଗନ୍ନାଥ ଓ ବଳଭଦ୍ର ପରିଧାନ କରନ୍ତି ।

# ଟାହିଆ ଲାଗି ବେଶ

ଏହି ବେଶ ଶ୍ରୀଜଗନ୍ନାଥଙ୍କ ପହଣ୍ଡିବିଜେ ସମୟରେ ଦେଖିବାକୁ ମିଳିଥାଏ । ରଥଯାତ୍ରା ପାଇଁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରା ଧାଡ଼ି ପହଣ୍ଡିରେ ରଥ ଉପରକୁ ଆସନ୍ତି । ସେହି ସମୟରେ ପ୍ରଭୁମାନଙ୍କୁ ସୁନ୍ଦର ଟାହିଆମାନ ପିନ୍ଧାଇ ଦିଆଯାଇଥାଏ । ଏହି ମନଲୋଭା ବେଶକୁ ଦେଖିବାଲାଗି ଲକ୍ଷ ଲକ୍ଷ ଭକ୍ତ ଉତ୍ସୁକ ଥାଆନ୍ତି । ଏହି ଟାହିଆ ବା ମୁକୁଟ ବେତ-ବାଉଁଶ, ସୋଲ ଓ ଫୁଲରେ ନିର୍ମିତ ହୋଇଥାଏ । ପାନପତ୍ର ଆକୃତିର ଟାହିଆଗୁଡ଼ିକର ଉଚ୍ଚତା ପ୍ରାୟ ଛଅ ଫୁଟ୍ ଏବଂ ବ୍ୟାସ ସାଢ଼େ ଆଠ ଫୁଟ୍ । ସୋଲ ତିଆରି କଦମ୍ବ ଫୁଲ ଟାହିଆକୁ ସୁଦୃଶ୍ୟ କରି ଗଢ଼ିଥାଏ । ଟାହିଆ ପିନ୍ଧା ସମୟର ବେଶକୁ ଟାହିଆଲାଗି ବେଶ କୁହାଯାଏ ।

# ସେନାପଟ୍ଟ ବେଶ



ରଥଯାତ୍ରା ସମୟରେ ବିଗ୍ରହମାନଙ୍କୁ ରଥ ଉପରକୁ ନେବାବେଳେ ପହଣ୍ଡିରେ ନିଆଯାଏ । ସେତେବେଳେ ଭକ୍ତମାନଙ୍କ ଭିଡ଼ ଲାଗିରହିଥାଏ । ପ୍ରଭୁମାନଙ୍କ ଶ୍ରୀଅଙ୍ଗର ସୁରକ୍ଷା ପାଇଁ ସେବକମାନେ ପହଣ୍ଡି ପୂର୍ବରୁ ବିଗ୍ରହମାନଙ୍କ ଦେହରେ ଭଲ ଭାବେ ସୂତା ଗୁଡ଼େଇ ବାନ୍ଧି ଦେଇଥାଆନ୍ତି । ଯେପରି ସେନାପତି ଯୁଦ୍ଧକୁ ଯିବା ପୂର୍ବରୁ ପ୍ରତିରକ୍ଷା ନିମନ୍ତେ ଆବଶ୍ୟକ ଦୃଢ଼ ପୋଷାକ ଭିତରେ ପରିଧାନ କରନ୍ତି ସେହିପରି ଶ୍ରୀଜଗନ୍ନାଥ ମଧ୍ୟ ଏଭଳି ପୋଷାକ ପିନ୍ଧନ୍ତି । ଏହି ବେଶ ଠାକୁରମାନଙ୍କୁ ଭିଡ଼ ଓ ଠେଲାପେଲା ଭିତରେ ସୁରକ୍ଷିତ ରଖିଥାଏ ॥

# ମକର ଚୌରାଶି ବେଶ



ମକର ସଂକ୍ରାନ୍ତି ପୂର୍ବଦିନ ଠାକୁରମାନଙ୍କୁ ଏହି ବେଶରେ ସଜ୍ଜିତ କରାଯାଇଥାଏ ।

# ଗିରିଗୋବର୍ଦ୍ଧନ ବେଶ

୧୯୪୭ ପୂର୍ବରୁ ପ୍ରତିବର୍ଷ ଭାଦ୍ରବ କୃଷ୍ଣ ତ୍ରୟୋଦଶୀ ତିଥିରେ ଜଗନ୍ନାଥଙ୍କର ଏହି ବେଶ ହେଉଥିଲା । ଏହି ବେଶରେ କୃଷ୍ଣ ଗିରିଗୋବର୍ଦ୍ଧନ ପାହାଡ଼କୁ ଟେକି ଧରିବାର ଦୃଶ୍ୟ ଦେଖିବାକୁ ମିଳେ । ଭାଗବତର କଥା ଅନୁସାରେ ଗୋପପୁର ବୃନ୍ଦାବନର ନାଗରିକମାନେ ଇନ୍ଦ୍ରଙ୍କୁ ପୂଜା କରୁଥିଲେ । ମାତ୍ର ଶ୍ରୀକୃଷ୍ଣ ସେମାନଙ୍କୁ ବାରଣ କରି ଇନ୍ଦ୍ରଙ୍କ ବଦଳରେ ଗୋବର୍ଦ୍ଧନଙ୍କୁ ପୂଜା କରିବାକୁ ପରାମର୍ଶ ଦେଲେ । ଏଥିରେ କ୍ରୁଦ୍ଧ ହୋଇ ଇନ୍ଦ୍ର ପ୍ରବଳ ବର୍ଷା କରାଇଲେ । ଏହି ତାଣ୍ଡବ ବର୍ଷାର ନାମ ସଂବର୍ତ୍ତକ । ତାହାର ତାଣ୍ଡବରେ ଗୋପବାସୀଏ ତ୍ରାହି ତ୍ରାହି ଡାକିଲେ । ସେମାନେ ସୁରକ୍ଷା ପାଇଁ କୃଷ୍ଣଙ୍କ ସହାୟତା ଲୋଡ଼ିଲେ । କୃଷ୍ଣ ଭଗବାନ ନିଜ ବାମହାତ କାଣି ଆଙ୍ଗୁଠିରେ ଗୋବର୍ଦ୍ଧନ ଗିରିକୁ ଉଠେଇ ଧରିଥିଲେ ଓ ତା ତଳେ ବୃନ୍ଦାବନବାସୀଏ ନିଜର ଗୋବତ୍ସା ସହିତ ନିରାପଦ ଆଶ୍ରୟ ଗ୍ରହଣ କରିଥିଲେ । ଏହି ରୂପେ ଭଗବାନ ଦେବରାଜ ଇନ୍ଦ୍ରଙ୍କ ଗର୍ବ ଖଣ୍ଡନ କରିଥିଲେ ।

ଭାଗବତର ଏହି ଉପାଖ୍ୟାନର ସ୍ମୃତିର ଶ୍ରୀମନ୍ଦିରରେ ଗିରିଗୋବର୍ଦ୍ଧନ ବେଶ ସଂପନ୍ନ ହେଉଥିବା ଅନୁମାନ କରାଯାଏ । ଏହି ବେଶରେ ଜଗନ୍ନାଥ ଏକ ପାହାଡ଼ ଟେକି ଧରିବା ପରି ବ୍ୟବସ୍ଥା କରାଯାଏ । ତେବେ ୧୯୪୭ ପରଠାରୁ ଏହି ବେଶ ଅନୁଷ୍ଠିତ ହେଉନାହିଁ । ଅନେକ ବର୍ଷ ଧରି ଏହା ବନ୍ଦ ରହିବା ପରେ ତା ବଦଳରେ ଏବେ କୃଷ୍ଣ ବଳରାମ ବେଶ ଅନୁଷ୍ଠିତ ହେଉଅଛି ।

# ପୁଷ୍ୟାଭିଷେକ ବେଶ



ଶ୍ରୀମନ୍ଦିର ସ୍ୱତ୍ୱଲିପି ଅନୁସାରେ ପୌଷ ପୂର୍ଣ୍ଣିମା ଦିନ ଶ୍ରୀଜଗନ୍ନାଥଙ୍କ ଅଭିଷେକ ହୋଇଥାଏ। ଅଭିଷେକ ପରେ ଦିଅଁମାନଙ୍କୁ ରାଜବେଶ (ସୁନାବେଶ)ରେ ସୁସଜ୍ଜିତ କରାଯାଇଥାଏ।

Incredible India




Scenic • Serene • Sublime

# When millions throng to celebrate the holy Jagannath Rath Yatra

The Rath Yatra (Car Festival) re-enacts the sacred journey of Lord Jagannath along with His brother Balabhadra & sister Subhadra. Three different mammoth & elaborately decorated chariots are pulled by thousands of devotees. Millions of devotees converge on the holy city of Puri to celebrate the nine-days festivities in the month of Ashadha (June/July).

Stroll into Orissa & Walk with the Lords.

**Webcast on** : www.orissatourism.gov.in / www.visitorissa.org

**Website** : orissatourism.gov.in | **Online booking** : www.visitorissa.org | **E-mail** : oritour@gmail.com | **Toll Free** : 1800 2097 123